# କାହାଣୀ ସ୍ତବକ

ସଂପାଦନା :

ଅଧ୍ୟାପକ : ଶ୍ରୀ ଭଗୀରଥି ବିଶ୍ୱାଳ

ଅଧ୍ୟାପକ : ଶ୍ରୀ ବିଜୟ କୁମାର ଶତପଥୀ

( ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ )

ଜାତୀୟ କବି ବୀରକିଶୋର ମହାବିଦ୍ୟାଳୟ, କଟକ

ଜଗତାରିଣୀ ବୁକ୍ ଷ୍ଟୋର

ପୁସ୍ତକ ପ୍ରକାଶକ ଓ ବିକ୍ରେତା

# କାହାଣୀ ସ୍ତବକ :

ସଂପାଦନା :
ଶ୍ରୀ ଭଗୀରଥ ବିଶ୍ୱାଳ
ଶ୍ରୀ ବିଜୟ କୁମାର ଶତପଥୀ

ପ୍ରକାଶକ :
ତାରତାରିଣୀ ବୁକ୍‌ଷ୍ଟୋର
ବାଲୁବଜାର, କଟକ-୨

୧୯୮୨ : ୧ମ ସଂସ୍କରଣ

ମୁଦ୍ରକ :
**ଶ୍ରୀ ରବୀନ୍ଦ୍ରନାଥ ପଣ୍ଡା**
ବାସନ୍ତୀଦୁର୍ଗା ପ୍ରିଣ୍ଟର୍ସ
ଖଟବିନସାହି, କଟକ-୮

ମୂଲ୍ୟ : ସାତଟଙ୍କା ପଚାଶ ପଇସା

KAHANI STABAKA

Edited by :
Prof. Bhagirathi Biswal
Prof. Bijaya Kumar Satpathy

Publisher :
Tara Tarini Book Store
Balubazar, Cuttack-2

1st Edition : 1982

Printed by :
**Rabindranath Panda**
Basantidurga Printers
Khatabin Sahi, Cuttack
**Rupees : 7-50 Paise Only**

# ମୁଖଶାଳା

ସାହିତ୍ୟ କେବଳ ସମାଜର ନିଖୁଣ ପ୍ରତିଛବି ନୁହେଁ, ଏହା ମଧ୍ୟ କାଳର ପ୍ରମୂର୍ତ୍ତି ପ୍ରତିବିମ୍ବ । କଳା କାଳର ସୃଷ୍ଟି ହେଲେ ହେଁ କାଳୋତ୍ତୀର୍ଣ୍ଣ ହେବାରେ ହିଁ ଏହାର ସାର୍ଥକତା ନିହିତ । ସାହିତ୍ୟ ଯୁଗ ରୁଚିକୁ ଅନ୍ତର୍ଗର୍ଭିତ କରିବାକୁ ବାଧ୍ୟ । ଏଥିପାଇଁ ଯୁଗର ପରିବର୍ତ୍ତନ ସହିତ ସାହିତ୍ୟର ଆଙ୍ଗିକ ଓ ଆତ୍ମିକ କ୍ଷେତ୍ରରେ ଯୁଗପତ୍ ପରିବର୍ତ୍ତନ ପରିଲକ୍ଷିତ ହୋଇଥାଏ । କଳାକୁ ଏହି ଦୃଷ୍ଟିରୁ ସମାଜର ସାମଗ୍ରିକ ପରିପ୍ରେକ୍ଷୀ ଭାବରେ ଅଭିହିତ କରାଯାଇପାରେ । ସାମାଜିକ ଚେତନା ଓ ରାଷ୍ଟ୍ରୀୟ ପ୍ରୟୋଜନୀୟତା ଦୃଷ୍ଟିରୁ ଏହାର ନାନ୍ଦନିକ (aesthetic) ଦିଗ ଅପେକ୍ଷା ପ୍ରେରଣାତ୍ମକ ଆଭିମୁଖ୍ୟ ଅଧିକ ଗୁରୁତ୍ୱପୂର୍ଣ୍ଣ । କଳା ବିଳାସ ଓ ଭାବ ବିଲୋପ ଅପେକ୍ଷା ସାମାଜିକ ଅଙ୍ଗୀକାର କଳା କ୍ଷେତ୍ରରେ (Social Commitment) ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ । ଆବେଗ ପ୍ରଧାନ ଭାବବିଳାସୀ ପ୍ରାଚୀନ ଯୁଗର ଅବସାନ ହୋଇ ଆଜି ଯୁକ୍ତିନିଷ୍ଠ, ମନନଧର୍ମୀ ଓ ବସ୍ତୁବାଦୀ ଯୁଗର ଅଭ୍ୟୁଦୟ ହୋଇଅଛି । ଏଥିପାଇଁ ପଦ୍ୟ ଅପେକ୍ଷା ଗଦ୍ୟ ଅଧୁନା ଜୀବନର ଅଧିକ ନିକଟବର୍ତ୍ତୀ । ସମସ୍ୟା-ସଙ୍କୁଳ ବ୍ୟସ୍ତ ବିବ୍ରତ ମଣିଷର ଜୀବନ ଆଜି ବହୁଧା ବିଖଣ୍ଡିତ ଓ ବିଭକ୍ତ । ଏହି ଖଣ୍ଡିତ ଜୀବନର ଚିତ୍ର କ୍ଷୁଦ୍ରଗଳ୍ପର କ୍ୟାନଭାସ୍ ଉପରେ ସେଥିପାଇଁ ଯଥାର୍ଥ ଭାବରେ ଶିଳ୍ପାୟିତ ହୋଇ ପାରୁଛି । ଏଣୁ ଦୀର୍ଘାୟତନବିଶିଷ୍ଟ ଉପନ୍ୟାସକୁ କକ୍ଷଚ୍ୟୁତ କରି ଆଧୁନିକ ଯୁଗର କ୍ଷୁଦ୍ରଗଳ୍ପ ସଫଳତାର ସ୍ୱର୍ଣ୍ଣ-ସିଂହାସନରେ ସମାବିଷ୍ଟ ହେଉଅଛି । ବିଶ୍ୱ-ସାହିତ୍ୟର ତରଙ୍ଗ ଓ ତତ୍ତ୍ୱ ଓଡ଼ିଆ ସାହିତ୍ୟକୁ ମଧ୍ୟ ସଞ୍ଜମିତ କରୁଅଛି । କାରଣ ଆଜିର ବିଶ୍ୱ କ୍ରମଶଃ ସଂକୁଚିତ ହୋଇ ଯାଉଅଛି । ଫଳରେ ବିଶ୍ୱ-ମାନବର ଚୈତିକ ପୁରୁଷର ଭାବମୂର୍ତ୍ତି କ୍ଷୁଦ୍ରଗଳ୍ପରେ ଉଜ୍ଜ୍ୱଳ ଭାବରେ ଉତ୍କୀର୍ଣ୍ଣ ହେଉଅଛି ।

କ୍ଷୁଦ୍ରଗଳ୍ପ ଏକ ଅର୍ବାଚୀନ ସୃଷ୍ଟି ହେଲେ ହେଁ ଏହା ବହୁ ଆବର୍ତ୍ତନ ଓ ବିବର୍ତ୍ତନ ମଧ୍ୟ ଦେଇ ସାମ୍ପ୍ରତିକ ରୂପ ପରିଗ୍ରହ କରିଅଛି । କାହାଣୀ କଥନ ଓ ଶ୍ରବଣ ମାନବର ଏକ ଆଦିମ ପ୍ରବୃତ୍ତି । ବେଦ, ଉପନିଷଦ ଓ ପୁରାଣମାନଙ୍କରେ ପ୍ରାଚୀନ ଭାରତର ଆତ୍ମିକ ପରିଚୟ ବିଭିନ୍ନ କଥା ଓ କାହାଣୀର ପରିଧି ମଧ୍ୟରେ ପରିଚ୍ଛନ୍ନ ଭାବରେ ଲକ୍ଷଣୀୟ । ଏହା ପରବର୍ତ୍ତୀକାଳରେ ପରୀ କାହାଣୀ (Tairy Tale), ରୂପକ ଗଳ୍ପ (Fable) ନୀତି ପ୍ରଧାନ ଗଳ୍ପ (moral), ଗାଳଗଳ୍ପ (Fantasy) ଓ କାହାଣୀ (Tale)

ମଧ୍ୟ ଦେଇ ସାମ୍ପ୍ରତିକ ଗଳ୍ପ-ରୂପ ଧାରଣ କରିଅଛି । ଏହି ରୂପ-ବୈଚିତ୍ର୍ୟ ବିଷ୍ଣୁଶର୍ମାଙ୍କ 'ପଞ୍ଚତନ୍ତ୍ର', ଦଣ୍ଡୀଙ୍କର 'ଦଶକୁମାର ଚରିତ' ଓ କାଳିଦାସଙ୍କ 'ବେତାଳ ପଞ୍ଚବିଂଶତି' ଆଦି ସୃଷ୍ଟି ସମ୍ପଦ ଭିତରେ ରସୋତ୍ତୀର୍ଣ୍ଣ ହୋଇଅଛି ।

ପାଶ୍ଚାତ୍ୟ ସାହିତ୍ୟରେ ଚସରଙ୍କୁ (Geoffrey Chaucer) କ୍ଷୁଦ୍ରଗଳ୍ପର ଜନକ ଆଖ୍ୟା ଦିଆଯାଇପାରେ । ତାଙ୍କର ସୃଷ୍ଟି-ମାନସର ସର୍ବଶ୍ରେଷ୍ଠ ପ୍ରତୀକ ଭାବରେ କ୍ୟାଣ୍ଟରବେରୀ କାହାଣୀମାଳା (The Canterbury Tales) ଏକ ବିଶ୍ୱବିଖ୍ୟାତ ଗ୍ରନ୍ଥ । ଏହାର ସରସ ରୂପ ଯେଉଁପରି ଉପଭୋଗ୍ୟ, ନୈତିକ ଆବେଦନ ସେହିପରି ବଳିଷ୍ଠ । ଫ୍ରାନ୍ସରେ ସାହିତ୍ୟର ଏହି ବିଭାଗଟି ବହୁଧା ପଲ୍ଲବିତ ଓ ପୁଷ୍କଳ ହୋଇଅଛି । ବିଶିଷ୍ଟ ସାହିତ୍ୟିକ ଆନାତୋଲ୍ ଫ୍ରାନସ୍ ଏଥିପାଇଁ କ୍ଷୁଦ୍ରଗଳ୍ପକୁ ଫରାସୀ ବୋଲି ଆଖ୍ୟାତ କରି କହିଛନ୍ତି—'Short story is French' ଶିଳ୍ପ ବିପ୍ଳବୋତ୍ତର ଫ୍ରାନ୍ସର ଜାତୀୟ ଭାବ ପ୍ରଣୋଦିତ ଚେତନାକୁ ସାର୍ଥକ ଶୈଳ୍ପିକ ଅଭିବ୍ୟକ୍ତି ପ୍ରଦାନ କରିବାରେ ଭିକ୍ଟର୍ ହ୍ୟୁଗୋ ଓ ମୋପାସାଁ (Mau Passant) ଆଦିଙ୍କ ନାମ ଉଲ୍ଲେଖଯୋଗ୍ୟ । ବିଶେଷତଃ ମୋପାସାଁଙ୍କ ରଚନାରେ ସାମାଜିକ ଚେତନାର ଯେଉଁ ବ୍ୟଙ୍ଗାତ୍ମକ ରୂପଟି ଫୁଟି ଉଠିଥିଲା, ତାହା ଅନନ୍ୟ । ରୁଷୀୟ ସାହିତ୍ୟରେ ମଧ୍ୟ ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିରୁ କ୍ଷୁଦ୍ରଗଳ୍ପ ସମୃଦ୍ଧ ଓ ବୈଚିତ୍ର୍ୟମଣ୍ଡିତ । ପୁଷ୍କିନ୍, ଗୋଗେଲ, ତୁର୍ଗେନେଭ, ଟଲ୍‌ଷ୍ଟୟ, ଚେକଭ୍ ଓ ମ୍ୟାକ୍ସିମ୍ ଗର୍କି ଏ କ୍ଷେତ୍ରରେ ସବ୍ୟସାଚୀ ସ୍ରଷ୍ଟା ଭାବରେ ସମ୍ମାନିତ । ମାର୍କିନ୍-ସାହିତ୍ୟରେ କ୍ଷୁଦ୍ରଗଳ୍ପର ସମର୍ଥ ରୂପକାର ଭାବରେ ପାଠକ ସମକ୍ଷରେ ସମୁଦ୍ଭାସିତ ହୁଅନ୍ତି ବିପୁଳ ଯଶର ଅଧିକାରୀ ଓ୍ୱାଶିଂଟନ୍ ଆରଭିଙ୍ଗ୍, ଏଡ୍‌ଗାର ଏଲାନ୍ ପୋ ଏବଂ ଓ' ହେନ୍‌ରି । ସେହିପରି ଇଂରାଜୀ ସାହିତ୍ୟ ମଧ୍ୟ ବହୁ ଯଶସ୍ୱୀ ଗଳ୍ପ-ପ୍ରତିଭାର ଜନନୀ ଭାବରେ ସୁବିଦିତ । ଅଭୂତପୂର୍ବ ଓ ଅସାଧାରଣ ପ୍ରତିଭାର ଅଧିକାରୀ ଭାବରେ କଥାକାର ଏଚ୍. ଜି. ଓ୍ୱେଲ୍‌ସ୍, ଡି. ଏଚ୍ ଲରେନ୍ସ, ଇ. ଏମ୍ ଫଷ୍ଟର ଓ ସମରସେଟ୍ ମମ୍‌ଙ୍କ ନାମ ସର୍ବାଦୌ ସ୍ମର୍ତ୍ତବ୍ୟ । ଉପଯୁକ୍ତ ସ୍ରଷ୍ଟାମାନଙ୍କ ରଚନାରେ ଜୀବନର ଚିରନ୍ତନ ଆବେଦନ ମର୍ମଗତ ହେବା ସଙ୍ଗେ ସଙ୍ଗେ ରାଷ୍ଟ୍ରୀୟ ପ୍ରାଣ ସ୍ପନ୍ଦନ ଓ ସାମାଜିକ ଅସ୍ପୃହା ମଧ୍ୟ ଅଭିବ୍ୟଞ୍ଜିତ ହୋଇଅଛି । ଭାରତର ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟରେ ଯେ ଏହି ବିଭାଗଟି ଅଧୁନା ଅଧିକତର ଦୀପ୍ତିରେ ଉଜ୍ଜ୍ୱଳ, ଏଥିରେ ସନ୍ଦେହର ଅବକାଶ ନାହିଁ ।

## କ୍ଷୁଦ୍ରଗଳ୍ପର ସ୍ୱରୂପ :

ସାହିତ୍ୟର ଅନ୍ୟାନ୍ୟ ବିଭାଗ ଭଳି ଏହାର ଏକ ସଂଜ୍ଞା ବା ପରିଭାଷା ଦେବା ସାଧ୍ୟାତୀତ । ବିଭିନ୍ନ ସମାଲୋଚକ ଏହାକୁ ବିଭିନ୍ନ ଭାବରେ ବିଶ୍ଳେଷଣ କରିଛନ୍ତି । ବିଶ୍ୱବିଖ୍ୟାତ କତିପୟ ଆଲୋଚକଙ୍କର ମତାମତ ଏ କ୍ଷେତ୍ରରେ ଉଲ୍ଲେଖ କଲେ ଅପ୍ରାସଙ୍ଗିକ

ହେବ ନାହିଁ । କ୍ଷୁଦ୍ରଗଳ୍ପର ସ୍ୱରୂପକୁ ଅବଧାରିତ କରିବାରେ ଏ ଗୁଡ଼ିକ ସହାୟକ ହୁଅନ୍ତି । ରୁଡ୍‌ୟାର୍ଡ଼ କିପ୍‌ଲିଙ୍ଗଙ୍କ ଭାଷାରେ, 'କ୍ଷୁଦ୍ରଗଳ୍ପ ହେଉଛି ସ୍କଟ୍‌ଲାଣ୍ଡୟାର୍ଡ଼ ପୋଲିସ୍‌ଙ୍କର ଲଣ୍ଠନ ଆଲୁଅ (Bulls' eye lantern) । ଏହା ଲକ୍ଷ ବସ୍ତୁ ଉପରେ ପଡ଼ି କେବଳ ତାକୁହିଁ ଆଲୋକିତ କରେ । ଅର୍ଥାତ୍ କ୍ଷୁଦ୍ରଗଳ୍ପ କୌଣସି ଏକ ନିର୍ଦ୍ଦିଷ୍ଟ ରସ-ଘନ ମୁହୂର୍ତ୍ତର ରସାଳ ଅଭିଲେଖ । ଏଚ୍.ଜି. ୱେଲ୍‌ସ୍ କ୍ଷୁଦ୍ରଗଳ୍ପର ଆକାରରେ ସ୍ୱଳ୍ପତା ଉପରେ ଗୁରୁତ୍ୱ ଆରୋପ କରି ମତ ପ୍ରକାଶ କରନ୍ତି ଯେ ଏହା ଯେପରି ୨୦ ମିନିଟ୍ ମଧ୍ୟରେ ପଢ଼ାଯାଇ ପାରିବ । ଏଡ୍‌ଗାର ଏଲାନ୍ ପୋ ମଧ୍ୟ ଏହାର ସମସ୍ତ ସୀମା ଉପରେ କଟକଣା ଜାରି କରିଛନ୍ତି । କେହି କେହି ଆଲୋଚକ ଏହାର ଶୈଳୀ ଉପରେ ଗୁରୁତ୍ୱ ପ୍ରଦାନ କଲାବେଳେ ଅନ୍ୟମାନେ ଏହାର ଉଦ୍ଦେଶ୍ୟ ଉପରେ ଜୋର ଦେଇଛନ୍ତି । ରବୀନ୍ଦ୍ରନାଥଙ୍କ ଭାଷାରେ—ଏହା ଛୋଟ ଛୋଟ କଥାର ସରଳ ସ୍ୱଚ୍ଛନ୍ଦ ଆତ୍ମପ୍ରକାଶ । ଏଥିରେ ବର୍ଣ୍ଣନାର ଛଟା, ଘଟଣାର ସନ୍ଦର୍ଭ ବା ତାତ୍ତ୍ୱିକ ଉପଦେଶ ନାହିଁ । ଏହାକୁ ପଢ଼ି ଶେଷକଲେ ମଧ୍ୟ ଏହା ଅସମାପ୍ତ ରହିଗଲା ପରି ଲାଗେ ଏବଂ ପାଠକର ମନରେ ଅସରନ୍ତି ଅତୃପ୍ତି ଭରିଦିଏ । ସେ ଯାହା ହେଉ, କ୍ଷୁଦ୍ରଗଳ୍ପର ସ୍ୱରୂପ ଓ ସ୍ୱଧର୍ମକୁ ନିମ୍ନଲିଖିତ ଭାବରେ ବିଶ୍ଳେଷିତ କରାଯାଇ ପାରେ ।

୧ । କ୍ଷୁଦ୍ରଗଳ୍ପ ଜୀବନର ଏକ ବର୍ଣ୍ଣାଢ୍ୟ ଓ ସ୍ମରଣୀୟ ମୁହୂର୍ତ୍ତର ରମଣୀୟ ଆତ୍ମପ୍ରକାଶ । ଏହା ମୁହୂର୍ତ୍ତର ବା କୌଣସି ଏକ ଅବସ୍ଥାର ଚିତ୍ରରୂପ ହୋଇଥିବାରୁ ଏହାର ଆୟତନ କ୍ଷୁଦ୍ର ହେବାକୁ ବାଧ୍ୟ ।

୨ । କ୍ଷୁଦ୍ରଗଳ୍ପରେ ଚରିତ୍ର ସଂଖ୍ୟା ସୀମିତ । କାରଣ କୌଣସି ଏକ ଭାବମୟ ମୁହୂର୍ତ୍ତର ପରିପ୍ରକାଶ ପାଇଁ ବହୁ ଚରିତ୍ର ଅନାବଶ୍ୟକ । ଏଣୁ ଚରିତ୍ର ଚିତ୍ରଣ କ୍ଷୁଦ୍ରଗଳ୍ପରେ ଏକ ଅପ୍ରାସଙ୍ଗିକ ବ୍ୟାପାର । ଚରିତ୍ରର ସ୍ୱାଭାବିକ ବିକାଶ ପାଇଁ ଆବଶ୍ୟକୀୟ ସମୟର ଦୀର୍ଘତାର ଅଭାବରୁ ଚରିତ୍ର ଚିତ୍ରଣକୁ ଉପେକ୍ଷା କରି ଲେଖକ ଖଣ୍ଡତା ମଧ୍ୟରେ ଅଖଣ୍ଡତା ଓ ବିନ୍ଦୁ ମଧ୍ୟରେ ସିନ୍ଧୁର ପରିପ୍ରକାଶ କରିବାକୁ ଆଗ୍ରହୀ ହୁଅନ୍ତି ।

୩ । ଏହାର ଭାଷା ବର୍ଣ୍ଣନାଧର୍ମୀ ନୁହେଁ—ବ୍ୟଞ୍ଜନାତ୍ମକ ( suggestive ). ବ୍ୟଞ୍ଜନା ଏହାର ପ୍ରାଣ ଓ ସଂକ୍ଷିପ୍ତତା ( brevity ) ଏହାର ଆତ୍ମା । ଏଣୁ ଏଥିରେ ବର୍ଣ୍ଣନା ବାହୁଲ୍ୟର ଅବକାଶ ନାହିଁ । ଦୀର୍ଘ ବର୍ଣ୍ଣନା, ଅତିକଥନ ଓ ଅପ୍ରାସଙ୍ଗିକ ତଥା ଅନାବଶ୍ୟକ ଚିତ୍ରଣ ଏହାର ପ୍ରାଣ ଧର୍ମକୁ [illegible] କରି ଏହାକୁ ହତ୍ୟା କରିଥାଏ ।

୪ । ସ୍ଥାନ, କାଳ ଓ ପାତ୍ରର ଏକତ୍ୱ କ୍ଷୁଦ୍ରଗଳ୍ପରେ ପରିରକ୍ଷିତ ହେବା ବାଞ୍ଛନୀୟ । ଏହି ଏକତ୍ୱ (Unity of Time, Place & Action) କ୍ଷୁଦ୍ର ଗଳ୍ପର ଏକ ଅପରିହାର୍ଯ୍ୟ ଉପାଦାନ । ଘଟଣା ବା କଥାବସ୍ତୁର ଏକମୁଖୀନତା ଓ ସ୍ପଷ୍ଟତା କେବଳ

ଏହି ଦ୍ୱାରା ସୁରକ୍ଷିତ ହୋଇ ପାରିବ । ସ୍ଥାନ, କାଳ ବା ପାତ୍ରର ପରିବେଷଣରେ ଐକ୍ୟ ନ ରହିଲେ ଏହା କ୍ଷୁଦ୍ରଗଳ୍ପର ଗଳ୍ପ-ଧର୍ମକୁ ସମୂଳେ ବିନଷ୍ଟ କରିଦେବ । ଏହି ସ୍ପଷ୍ଟତା ବା clarity ଉପରେ ଗୁରୁତ୍ୱ ଆରୋପ କରି Anatole France ମତ ବ୍ୟକ୍ତ କରନ୍ତି – 'First clarity, then clarity; and Finally clarity—ଅର୍ଥାତ୍ ଏହି ଭାବ-ସାନ୍ଦ୍ରତା ଓ ସ୍ପଷ୍ଟତା କ୍ଷୁଦ୍ର ଗଳ୍ପରେ ଆମୂଳଚୂଳ ଅବ୍ୟାହତ ରହିବା ଆବଶ୍ୟକ ।

୫ । କ୍ଷୁଦ୍ରଗଳ୍ପର ନାଟକୀୟତା ଏକ ଲକ୍ଷଣୀୟ ବିଭବ । ବିଷୟବସ୍ତୁର ଉପସ୍ଥାପନ, ପରିବେଷଣ ଓ ପରିସମାପ୍ତିରେ ଏହି ନାଟକୀୟ ଉନ୍ମାଦନା ଦର୍ଶନୀୟ । ଗଳ୍ପର ଆରମ୍ଭ ଯେଉଁପରି ଆକସ୍ମିକ, ଏହାର ପରିସମାପ୍ତି ମଧ୍ୟ ସେହିପରି ଅପ୍ରତ୍ୟାଶିତ ।

ଉପରେ କ୍ଷୁଦ୍ରଗଳ୍ପର ଧର୍ମ ସମ୍ପର୍କୀୟ କେତେକ ସୂଚନା ଦିଆଗଲା । ଏଥିରୁ କ୍ଷୁଦ୍ର ଗଳ୍ପର ସ୍ୱରୂପ ଅବଧାରଣ କରାଯାଇପାରେ; ମାତ୍ର ଏ କ୍ଷେତ୍ରରେ ଏତେ ସଂଖ୍ୟାରେ ପରୀକ୍ଷା ନିରୀକ୍ଷା ଚାଲିଛି ଯେ, ସେଥିରୁ ଏହା ଶୈଳୀ ବା ସ୍ୱରୂପର ସାମଗ୍ରିକ ଚିତ୍ର ପ୍ରଦାନ କରିବା ଅସମ୍ଭବ । ଭାବଗତ ଦୃଷ୍ଟିରୁ ଏହାକୁ ପଦ୍ୟ ସାହିତ୍ୟର ଗୀତି କବିତା ସହିତ ତୁଳନା କରାଯାଇ ପାରେ । ସାଙ୍ଗୀତିକ ମାଧୁର୍ଯ୍ୟ, ଅନ୍ତର୍କେନ୍ଦ୍ରିକ ଭାବାନୁଷଙ୍ଗ ତଥା ଆତ୍ମଚେତନକ ସ୍ୱଳ୍ପତା ଏହି ଦୁଇଟି ବିଭାଗ ଭିତରେ ସମତା ଆନୟନର ହେତୁ ରୂପେ ଦଣ୍ଡାୟମାନ ହୁଅନ୍ତି । କ୍ଷୁଦ୍ରଗଳ୍ପ ଉପନ୍ୟାସର ସଗୋତ୍ରୀୟ ହେଲେ ହେଁ (ଉଭୟ ଗଦ୍ୟ ରଚନା) ସମଧର୍ମୀ ନୁହନ୍ତି । ଉପନ୍ୟାସରେ ଜୀବନର ଘାତ-ପ୍ରତିଘାତମୟ ସାମଗ୍ରିକତା ଗୁମ୍ଫିତ ହେବାର ଅବକାଶ ଥିଲାବେଳେ କ୍ଷୁଦ୍ରଗଳ୍ପ ଜୀବନର ଖଣ୍ଡାଂଶକୁ ଚିତ୍ରିତ ଓ ଉଦ୍ଭାସିତ କରିଥାଏ । ଉପନ୍ୟାସ ବର୍ଣ୍ଣନା-ପ୍ରଧାନ; ମାତ୍ର କ୍ଷୁଦ୍ରଗଳ୍ପ ଇଙ୍ଗିତଧର୍ମୀ ଉପନ୍ୟାସରେ ଏକାଧିକ ଚରିତ୍ରର ପାରସ୍ପରିକ ଓ ଘଟଣାର ସଂଘାତମୟ ଧ୍ୱନି ଶ୍ରୁତିଗୋଚର ହୁଏ – ମାତ୍ର କ୍ଷୁଦ୍ର ଗଳ୍ପରେ ଚରିତ୍ରମାନେ ବାଗାଡ଼ମ୍ବର ପ୍ରଦର୍ଶନ ନ କରି ନିର୍ଦ୍ଦେଶ କରି ଇଙ୍ଗିତ ଦିଅନ୍ତି । ଏଠାରେ ଘଟଣା ମୁଖ୍ୟ ନୁହେଁ—ଭାବର ନାଟକୀୟ ପରିପ୍ରକାଶ ମୂଳ୍ୟ । ଏଥିପାଇଁ କ୍ଷୁଦ୍ର ଗଳ୍ପକୁ ସମ୍ପ୍ରସାରିତ କଲେ ତାହା ଯେପରି ଉପନ୍ୟାସ ହେବନାହିଁ, ଉପନ୍ୟାସକୁ ସଙ୍କୁଚିତ କରିଦେଲେ, ତାହା ମଧ୍ୟ କ୍ଷୁଦ୍ରଗଳ୍ପ ହେବନାହିଁ ।

**କ୍ଷୁଦ୍ରଗଳ୍ପର ବର୍ଗୀକରଣ**

ଅଭିମୂଖ୍ୟ ଦୃଷ୍ଟିରୁ କ୍ଷୁଦ୍ରଗଳ୍ପକୁ ସାମାଜିକ, ଐତିହାସିକ, ମନସ୍ତାତ୍ତ୍ୱିକ, ରାଜନୈତିକ ଓ ବୈଜ୍ଞାନିକ ଭାବରେ ବିଭକ୍ତ କରାଯାଇଥାଏ । ଭାବ ଦୃଷ୍ଟିରୁ କ୍ଷୁଦ୍ରଗଳ୍ପକୁ ମାନବବାଦୀ, ବ୍ୟଙ୍ଗାତ୍ମକ, ପ୍ରେମମୂଳକ, ପ୍ରଗତିବାଦୀ ଓ ସମାଜବାଦୀ ଭାବରେ ବର୍ଗୀକରଣ କରାଯାଇ ପାରେ । ସେହିପରି ଆଙ୍ଗିକ ବୈଚିତ୍ର୍ୟ ଦୃଷ୍ଟିରୁ ଏହାକୁ ଆଭାସ ଗଳ୍ପ,

ଅଣୁଗଳ୍ପ, ମିନି ଗଳ୍ପ, ଉଦ୍ଭଟ ଗଳ୍ପ, ପ୍ରତୀକବାଦୀ ଗଳ୍ପ, ରୂପକ ଗଳ୍ପ ଓ ଅଗଳ୍ପ ଏବଂ ଶିଳ୍ପରୀତିର ମାନଦଣ୍ଡରେ ଏହାକୁ ଘଟଣା ପ୍ରଧାନ, ଚରିତ୍ର ପ୍ରଧାନ, ସଂଳାପ ପ୍ରଧାନ, ପରିବେଶ ପ୍ରଧାନ, ଆଦି ଶ୍ରେଣୀରେ ବର୍ଗୀକୃତ କରାଯାଇଥାଏ । ସାମ୍ପ୍ରତିକ କାଳରେ କ୍ଷୁଦ୍ରଗଳ୍ପର ଆଙ୍ଗିକ କ୍ଷେତ୍ରରେ ବହୁ ପରୀକ୍ଷା ନିରୀକ୍ଷା ଚାଲିଅଛି । ଏଥିରେ ଗୋଟିଏ ଲକ୍ଷଣୀୟ ବିଷୟ ହେଉଛି କ୍ଷୁଦ୍ରଗଳ୍ପର ଆକାର କ୍ରମଶଃ କ୍ଷୁଦ୍ରରୁ କ୍ଷୁଦ୍ରତର ହେବାକୁ ଲାଗୁଛି । ଏହି ପ୍ରବୃତ୍ତିରୁ ମିନି, ଆଣବ, ଅଣୁ ଓ ଅଗଳ୍ପର ସୃଷ୍ଟି ।

**ଓଡ଼ିଆ କ୍ଷୁଦ୍ରଗଳ୍ପ—ଉଦ୍ଭବ ଓ ବିକାଶଧାରା :**

ଫକୀର ମୋହନ ସେନାପତି ଯଥାର୍ଥତଃ ଆଧୁନିକ କ୍ଷୁଦ୍ରଗଳ୍ପର ଜନକ । ଗଳ୍ପ କାହାଣୀର ଅଲୌପାଖ୍ୟାନୀୟ ସୁଦୃଢ଼ ବନ୍ଧନରୁ ମୁକ୍ତହୋଇ କ୍ଷୁଦ୍ରଗଳ୍ପର ଶିଳ୍ପରୀତି ଆଡ଼କୁ ଆକୃଷ୍ଟ ହୋଇଅଛି । ଏହି ପ୍ରବଣତା ଫକୀର ମୋହନଙ୍କଠାରେ ଚୂଡ଼ାନ୍ତରୂପ ଲାଭକରି ନ ଥିବାରୁ ତାଙ୍କୁ ସମନ୍ୱୟବାଦୀ ଗାଳ୍ପିକ ଭାବରେ ଅଭିହିତ କରାଯାଏ । ତେବେ ତାଙ୍କର ପେଟେଣ୍ଟ ମେଡ଼ିସିନ୍ 'ରେବତୀ' ଆଦି ଗଳ୍ପରେ ଏହି ପ୍ରବଣତା ଅଧିକ ବର୍ତ୍ତମାନ । 'ବୋଧଦାୟିନୀ' ନାମକ ମାସିକ ପତ୍ରରେ ୧୮୬୮ ଖ୍ରୀଷ୍ଟାବ୍ଦରେ 'ଲଛମନିଆ' ଶୀର୍ଷକ କ୍ଷୁଦ୍ରଗଳ୍ପ ପ୍ରକାଶିତ ହୋଇଥିଲା; ମାତ୍ର ଏହି ଗଳ୍ପଟି ଅଦ୍ୟାବଧି ଲୋକଲୋଚନକୁ ଆସିନାହିଁ । ଦୀର୍ଘ ୩୦ ବର୍ଷ ପରେ ଲେଖକଙ୍କର 'ରେବତୀ' ଉତ୍କଳ ସାହିତ୍ୟରେ ପତ୍ରସ୍ଥ ହୋଇଥିଲା । ଏହାକୁ ସର୍ବପ୍ରଥମ କ୍ଷୁଦ୍ରଗଳ୍ପ ଭାବରେ ଗ୍ରହଣ କରାଯାଇ ପାରେ । ଏତଦ୍‌ବ୍ୟତୀତ ସେ ବହୁ ଗଳ୍ପ ଓ ଚାରିଗୋଟି ଉପନ୍ୟାସର ପ୍ରଣେତା । ତାଙ୍କ ଗଳ୍ପରେ ସମାଜ ସଚେତନ ଦୃଷ୍ଟିଭଙ୍ଗୀ ସହିତ ହାସ୍ୟ ଓ ବ୍ୟଙ୍ଗାତ୍ମକ ଶୈଳୀ ତଥା ସଂସ୍କାର ପ୍ରୟାସ ଦର୍ଶନୀୟ । ସାର୍ଥକ ସୃଷ୍ଟି ଭାବରେ 'ଡାକ ମୁନ୍‌ସି' 'ରାଣ୍ଡୀପୁଅ ଅନନ୍ତା' ଓ 'ଧୂଳିଆ ବାବା' ଇତ୍ୟାଦିକୁ ସ୍ମରଣ କରାଯାଇ ପାରେ । ଗଳ୍ପ ରଚନାର ଏହି ପ୍ରାଥମିକ ପର୍ଯ୍ୟାୟରେ ଗଳ୍ପ ସ୍ରଷ୍ଟା ଚନ୍ଦ୍ରଶେଖର ନନ୍ଦ, ବାଞ୍ଛାନିଧି ପଟ୍ଟନାୟକ, ଦୟାନିଧି ମିଶ୍ର, ଚନ୍ଦ୍ରମଣି ମହାନ୍ତି, ଗୋଦାବରୀଶ ମିଶ୍ର, ଗୋଦାବରୀଶ ମହାପାତ୍ର, ଦିବ୍ୟସିଂହ ପାଣିଗ୍ରାହୀ ଓ ଲକ୍ଷ୍ମୀକାନ୍ତ ମହାପାତ୍ର ଆଦିଙ୍କ ନାମ ଉଲ୍ଲେଖଯୋଗ୍ୟ । ଜାତୀୟତା ଓ ଦେଶାତ୍ମବୋଧ, ଉଦାର ମାନବବାଦ, ସମାଜଚିତ୍ର ଓ ସଂସ୍କାର-ପ୍ରୟାସ ଉପରୋକ୍ତ ସୃଷ୍ଟିସମ୍ଭାର ଭିତରେ ଶବଳିତ । ଗୋଦାବରୀଶ ମିଶ୍ରଙ୍କର 'ପୁଆଣିଘର' ଓ 'ନଅଟିଗଳ୍ପ', ଗୋଦାବରୀଶ ମହାପାତ୍ରଙ୍କର 'ମୁଁ ଦିନେ ମନ୍ତ୍ରୀ ଥିଲି' 'ନୀଳମାଷ୍ଟ୍ରାଣୀ' ଆଦି ଗଳ୍ପପୁସ୍ତକ ସ୍ୱକୀୟ ମହିମାରେ ଭାସ୍ୱର । ଗୋଦାବରୀଶ ମହାପାତ୍ର ମୁଖ୍ୟତଃ ଜଣେ ଉଗ୍ର ଜାତୀୟତାବାଦୀ । ରାଜନୈତିକ ବ୍ୟଙ୍ଗ ରଚନା କରିବାରେ ସେ ସିଦ୍ଧହସ୍ତ । ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଗଳ୍ପ ସରସ ଓ ହାସ୍ୟରସାତ୍ମକ । ତେବେ ତାଙ୍କର 'ବୁଢ଼ା ଶଙ୍ଖାରି' ଆଦି କ୍ଷୁଦ୍ରଗଳ୍ପରେ ଶାଶ୍ୱତ ମାନବିକ ଆବେଦନର ଫଲ୍‌ଗୁ ପ୍ରବାହିତ । ଏହି କାଳକୁ ଆମେ ବିଂଶ ଶତକର ଆରମ୍ଭରୁ ଚତୁର୍ଥ ଦଶକର ମଧ୍ୟଭାଗ ପର୍ଯ୍ୟନ୍ତ ସୀମିତ କରିପାରିବା ।

କ୍ଷୁଦ୍ର ଗଳ୍ପର ଦ୍ୱିତୀୟ ପର୍ଯ୍ୟାୟ ପୂର୍ବାଲୋଚିତ କାଳର ଶେଷ ଭାଗରୁ ସ୍ୱାଧୀନତା ପର୍ଯ୍ୟନ୍ତ ବିସ୍ତୃତ। ଏହି ସମସ୍ତ ସୀମା ମଧ୍ୟରେ ଗୋଦାବରୀଶ ମହାପାତ୍ର, କାଳିନ୍ଦୀଚରଣ ପାଣିଗ୍ରାହୀ, ନିତ୍ୟାନନ୍ଦ ମହାପାତ୍ର, ସଚ୍ଚିଦାନନ୍ଦ ରାଉତରାୟ, ରାଜକିଶୋର ରାୟ, ରାଜକିଶୋର ପଟ୍ଟନାୟକ, ଅନନ୍ତ ପ୍ରସାଦ ପଣ୍ଡା, ଗୋପୀନାଥ ମହାନ୍ତି, କାହ୍ନୁଚରଣ ମହାନ୍ତି ଆଦି ସ୍ରଷ୍ଟା ପୁରୁଷଙ୍କର ଆବିର୍ଭାବ ହୁଏ। କାଳିନ୍ଦୀ ଚରଣ, ରାଜକିଶୋର ରାୟ, ସଚ୍ଚି ରାଉତରାୟଙ୍କ ପ୍ରାଥମିକ ସୃଷ୍ଟି ମୁଖ୍ୟତଃ ରୋମାଣ୍ଟିକ୍ ଧର୍ମୀ। ପ୍ରେମାନୁଭୂତି ଏହି ସୃଷ୍ଟିକୁ ବିଭବଶାଳୀ କରିଅଛି। କାଳିନ୍ଦୀ ଚରଣଙ୍କ 'ସାଗରିକ', ସଚ୍ଚି ରାଉତରାୟଙ୍କ 'ମଶାଣିର ଫୁଲ' ଭିତରେ ଏହି ପ୍ରବଣତା ବର୍ତ୍ତମାନ। ରାଜକିଶୋର ପଟ୍ଟନାୟକ ଜଣେ ଜୀବନଧର୍ମୀ କଳାକାର। ଚରିତ୍ରସୃଷ୍ଟି ତାଙ୍କ ଗଳ୍ପରେ ଏକ ଲକ୍ଷଣୀୟ ବିଭବ। ତୁଚ୍ଛାତିତୁଚ୍ଛ ଘଟଣାକୁ ସେ ଯେଉଁ ସମ୍ବେଦନଶୀଳ ମାନବବାଦୀ ରୂପ ପ୍ରଦାନ କରିଛନ୍ତି, ତାହା ତାଙ୍କ କୃତିତ୍ୱର ପରିଚୟ ଦିଏ। ଗୋପୀନାଥ, କାହ୍ନୁଚରଣ ଓ ଅନନ୍ତ ପ୍ରସାଦ ବିଭିନ୍ନ ସାମାଜିକ ସମସ୍ୟା ଉପରେ ତାଙ୍କର ମନ ଓ ମନନ କେନ୍ଦ୍ରୀଭୂତ କରିଛନ୍ତି।

ଗଳ୍ପର ତୃତୀୟ ପର୍ଯ୍ୟାୟ (୧୯୪୭-୬୦)ରେ ବିଶିଷ୍ଟ ଶକ୍ତିଶାଳୀ ପ୍ରତିଭା ଭାବରେ ଆବିର୍ଭୂତ ହୋଇଛନ୍ତି ସୁରେନ୍ଦ୍ର ମହାନ୍ତି, ମହାପାତ୍ର ନୀଳମଣି ସାହୁ, ବ୍ରହ୍ମାନନ୍ଦ ପଣ୍ଡା, ମନୋଜ ଦାସ ଆଦି କଥାକାରଗଣ। ସୁରେନ୍ଦ୍ର ମହାନ୍ତିଙ୍କ ଶୈଳୀ ଓଡ଼ିଆ ସାହିତ୍ୟରେ ଏକକ ଓ ଅସାଧାରଣ। ତାଙ୍କର ଗଳ୍ପରେ ଜୀବନାନୁଭୂତିର ବିଚିତ୍ର ସ୍ୱାଦ ଓ ଭାବ ବୈଚିତ୍ର୍ୟ ଲକ୍ଷଣୀୟ। ପୁରାଣ, ବୌଦ୍ଧ ଜାତକ ଓ ଇତିହାସ ପୃଷ୍ଠାରୁ ବହୁ ନୀରସ ଆଖ୍ୟାୟିକା ଚୟନ କରି ସେ ସେଗୁଡ଼ିକୁ ସାହିତ୍ୟିକ ମର୍ଯ୍ୟାଦାରେ ମଣ୍ଡିତ କରିଛନ୍ତି। କ୍ଷୟିଷ୍ଣୁ ସାମନ୍ତବାଦର ସେ ସଫଳ ରୂପକାର। ମହାପାତ୍ର ନୀଳମଣି ସାହୁ ଏ କ୍ଷେତ୍ରରେ ବିପୁଳ ଯଶ ଓ ପ୍ରତିଷ୍ଠାର ଅଧିକାରୀ। ହାସ୍ୟାତ୍ମକ ଶୈଳୀର କୋମଳ ଆବରଣ ଭିତରେ କାରୁଣ୍ୟର ଯେଉଁ ବୈକଲ୍ୟ ବିଧୃତ, ତାହା ତାଙ୍କ ଗଳ୍ପକୁ ଅନାସ୍ୱାଦିତ ସୌନ୍ଦର୍ଯ୍ୟରେ ଉଦ୍ଭାସିତ କରିଅଛି। ପ୍ରେମ ମାନବବାଦ, ଆଧିଭୌତିକ ଚେତନା, ଆଧ୍ୟାତ୍ମବାଦ ଆଦି ବିଭିନ୍ନ ବିଷୟକୁ ସେ ତାଙ୍କର ଗଳ୍ପ-ସୃଷ୍ଟିରେ ସରସ ରୂପ ପ୍ରଦାନ କରିଛନ୍ତି। ବ୍ରହ୍ମାନନ୍ଦ ପଣ୍ଡା ଆଞ୍ଚଳିକ ଗଳ୍ପର ସ୍ରଷ୍ଟା ଭାବରେ କୃତିତ୍ୱର ପରିଚୟ ପ୍ରକାଶ କରିଛନ୍ତି। 'ବଂଶୀ ଓ ବନ୍ଦୁସୀ' 'ଅକାଳ କ୍ଷୀରର ସମ୍ଭାର' ଓ 'ଅନ୍ଧାରର ରୂପ' କେତୋଟି ସାର୍ଥକନାମା ଆଞ୍ଚଳିକ ଗଳ୍ପର ଉଦାହରଣ।

ମନୋଜ ଦାସ ଆଧୁନିକ ଗଳ୍ପ-ସାହିତ୍ୟରେ ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟା ଭାବରେ ସମ୍ମାନିତ ଆସନର ଅଧିକାରୀ। ଆନ୍ତର୍ଜାତୀୟ କ୍ଷେତ୍ରରେ ସେ ଜଣେ ପ୍ରଖ୍ୟାତ-ନାମା ଗାଳ୍ପିକ ଭାବରେ ସ୍ୱୀକୃତ। ନିଃସଙ୍ଗ, ବିକଳ, ଅନ୍ତଃସାରଶୂନ୍ୟ ସଭ୍ୟତାର ସେ ଜଣେ ବ୍ୟଙ୍ଗକାର। ଏହି ବ୍ୟଙ୍ଗ ଲେଖକଙ୍କର ଗଭୀର ମାନବ-ପ୍ରୀତିରୁ ସମ୍ଭୂତ।

ନାଟକୀୟ ଉତ୍କଣ୍ଠା, ଆଧିଭୌତିକ ଜୀବନ ଓ ଜଗତର ରହସ୍ୟ, ଉର୍ଦ୍ଧ୍ୱର୍ଣ୍ଣ ମାନବିକ ଚେତନାର ଇଙ୍ଗିତ, ଅବଚେତନର ସ୍ୱପ୍ନ-ବିହ୍ୱଳ ବିସ୍ଫୋରଣ ଓ ଭୌତିକ ତଥା ରୋମାଞ୍ଚକର ପରିବେଶର ରୁଦ୍ଧଶ୍ୱାସ ମୁହୂର୍ତ୍ତର ଚିତ୍ର ତାଙ୍କ ଗଳ୍ପରେ ମୂର୍ତ୍ତିମନ୍ତ । ମନସ୍ତାତ୍ତ୍ୱିକ, ନୃତାତ୍ତ୍ୱିକ ଓ ମନୋବୈଜ୍ଞାନିକ ବିଶ୍ଳେଷଣରେ ଏବଂ ଶାଣିତ ଦୃଷ୍ଟିଭଙ୍ଗୀର ଅପୂର୍ବ ଦ୍ୟୋତନାରେ ସେ ଏକ ପରିଚ୍ଛନ୍ନ ଓ ସ୍ୱକୀୟ ସାରସ୍ୱତ ଜଗତ ସୃଷ୍ଟି କରିଛନ୍ତି । ଏହାର ବ୍ୟାପ୍ତି ଯେଉଁଭଳି ଅନନ୍ତ ଓ ଅତଳସ୍ପର୍ଶୀ ଏହାର ଦୀପ୍ତି ସେହିପରି ଅପୂର୍ବ ଓ ଅନାସ୍ୱାଦିତ ରସ-ଚେତନାରେ ଭାସ୍ୱର ।

ସାମ୍ପ୍ରତିକ କାଳରେ କଥା ଶିଳ୍ପୀ ମନୋଜଦାସଙ୍କ ସହିତ ଶାନ୍ତନୁକୁମାର ଆଚାର୍ଯ୍ୟ, କିଶୋରୀ ଚରଣ ଦାସ, ଅଖିଳ ମୋହନ ପଟ୍ଟନାୟକ, ରବି ପଟ୍ଟନାୟକ, ଚନ୍ଦ୍ରଶେଖର ରଥ, କୃଷ୍ଣପ୍ରସାଦ ମିଶ୍ର ଓ ଅଚ୍ୟୁତାନନ୍ଦ ପତିଙ୍କ ନାମ ସର୍ବାଗ୍ରେ ସ୍ମରଣୀୟ । ଅଭିଜାତ ଓ ଉଚ୍ଚ ମଧ୍ୟବିତ୍ତ ଗୋଷ୍ଠୀର ଜୀବନଚର୍ଯ୍ୟା କିଶୋରୀ ଚରଣଙ୍କର କଥାବସ୍ତୁ ଭାବରେ ଗୃହୀତ । ଆଧୁନିକ ଜୀବନର ବିଡ଼ମ୍ବନା ଓ ବ୍ୟର୍ଥତା ତାଙ୍କ ଗଳ୍ପର ମୁଖ୍ୟ ଉପଜୀବ୍ୟ । ସାମନ୍ତବାଦର ଛଦ୍ମ ଆବରଣ ଭିତରେ ସେ ଆତ୍ମିକ ଶୂନ୍ୟତା ଆବିଷ୍କାର କରି ବିମୂଢ଼ ହୋଇଛନ୍ତି । ଅଖିଳମୋହନ ପଟ୍ଟନାୟକ ସାମ୍ପ୍ରତିକ ଜୀବନ-ଯନ୍ତ୍ରଣାର ଜଣେ ସଫଳ ଭାଷ୍ୟକାର । ସମ୍ବେଦନଶୀଳତା ସହିତ ନିବିଡ଼ ମାନବବାଦର ମଧୁର ସମନ୍ୱୟରେ ତାଙ୍କର ସୃଷ୍ଟି ଋଦ୍ଧିମନ୍ତ । ଶାନ୍ତନୁ କୁମାର ଦୃଷ୍ଟିଭଙ୍ଗୀରେ ଯେଉଁଭଳି ମୌଳିକ, ପରିବେଷଣରେ ସେହିପରି ଏକକ । ଜୀବନ-ଜିଜ୍ଞାସାର ସ୍ୱର ତାଙ୍କ ସୃଷ୍ଟି ପରିଧିଭିତରେ ଉଦ୍‌ଘୋଷିତ । ଅନାଦ୍ୟ ଜଗତର ରହସ୍ୟ ଉଦ୍‌ଘାଟନ ଓ ଅବଚେତନର ସୂକ୍ଷ୍ମାତିସୂକ୍ଷ୍ମ ପର୍ଯ୍ୟବେକ୍ଷଣ ତାଙ୍କ ସୃଷ୍ଟିର ପ୍ରଧାନ ଅଭିମୁଖ୍ୟ । କୃଷ୍ଣପ୍ରସାଦ ମିଶ୍ରଙ୍କ ଗଳ୍ପରେ ବିଚିତ୍ର ଅନୁଭବର ରସୋତ୍ତୀର୍ଣ୍ଣ ରୂପ ଅଙ୍କିତ । ସେ ଜଣେ ଧୁରୀଣ ଜୀବନ-ଶିଳ୍ପୀ ଭାବରେ ସ୍ୱୀକୃତ । ଶାଣିତ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ ଓ ସମାଜ ସଚେତନଶୀଳତା ତାଙ୍କ ଗଳ୍ପରେ ଲକ୍ଷଣୀୟ । ଅଚ୍ୟୁତାନନ୍ଦ ପତିଙ୍କର ରଚନାଶୈଳୀ ସରସ ଓ ଭାବଗର୍ଭିକ । ସମାଜ ଜୀବନର ତ୍ରୁଟି-ବିଚ୍ୟୁତି ତଥା ଅର୍ଥନୈତିକ ବୈଷମ୍ୟ ବିରୁଦ୍ଧରେ ସେ ବିଦ୍ରୋହ ଘୋଷଣା କରିଛନ୍ତି । ଜୀବନଧର୍ମୀ ଗାଳ୍ପିକ ଭାବରେ ଭୁବନେଶ୍ୱର ବେହେରା ଓ ଶ୍ରୀନିବାସ ଉଦ୍‌ଗାତା ପ୍ରଚୁର ସିଦ୍ଧିର ଅଧିକାରୀ । ଉଭୟଙ୍କ ରଚନାରେ ଶିଳ୍ପ-ରୀତିର ସାଫଲ୍ୟ ସହିତ ସରସ ଭାବ-ସମ୍ପଦର ସଂଯୋଜନ ଲକ୍ଷଣୀୟ । ଶ୍ରୀମତୀ ବୀଣାପାଣି ମହାନ୍ତିଙ୍କର ଗଳ୍ପରେ ଜୀବନ ଜିଜ୍ଞାସା ଯେଉଁଭଳି ତୀବ୍ର, ସାମାଜିକ ଅଙ୍ଗୀକାର ଓ ମାନବବାଦୀ ଚେତନା ସେହିପରି ଉଦଗ୍ର । ଏତଦ୍‌ବ୍ୟତୀତ ବାମାଚରଣ ମିତ୍ର, ଫତୁରାନନ୍ଦ, ଚୌଧୁରୀ ହେମକାନ୍ତ ମିଶ୍ର ଓ ରାମଚନ୍ଦ୍ର ବେହେରା ଆଦି ଗଳ୍ପକାରମାନେ ଓଡ଼ିଆ ସାହିତ୍ୟର ଗଳ୍ପ ଭଣ୍ଡାରକୁ ସେମାନଙ୍କର ଅବଦାନଦ୍ୱାରା ସମୃଦ୍ଧ କରିଛନ୍ତି ।

ସାମ୍ପ୍ରତିକ ଓଡ଼ିଆ କ୍ଷୁଦ୍ରଗଳ୍ପ ପରିମାଣ ଓ ଗୁଣାତ୍ମକ ଦୃଷ୍ଟିରୁ ସମକାଳୀନ ଯେ ଯେ କୌଣସି ପ୍ରାନ୍ତୀୟ ସାହିତ୍ୟର ଗଳ୍ପ-ବିଭାଗ ସମକକ୍ଷ ହେବାକୁ ସମର୍ଥ । ଏଥିରେ ସମ୍ଭାବନାର ଅବକାଶ ଯେତିକି ଉଜ୍ଜ୍ୱଳ, ଉତ୍ତରଣର ପ୍ରୟାସ ସେତିକି ଅବିସମ୍ବାଦିତ; ମାତ୍ର ସାମାଜିକ ଅଙ୍ଗୀକାର ଏବଂ ରାଷ୍ଟ୍ରୀୟ ତଥା ଜାତୀୟ ଭାବମୂର୍ତ୍ତିର ରୂପାୟନରେ ଅଭିବବୋଧ ବହୁ ଗଳ୍ପରେ ଅନୁଭୂତ ହେଉଅଛି । ଓଡ଼ିଶାର ଗାଳ୍ପିକମାନେ ଜନ-ଜୀବନଠାରୁ ସୁଦୂରକୁ ପଳାୟନ କରୁଥିବାର ମନୋବୃତ୍ତି ଅନେକ ସମ୍ବନ୍ଧରେ ଲକ୍ଷ୍ୟ କରି ହୁଏ । ଏହା କେବଳ ସାହିତ୍ୟ ନୁହେଁ— ଜାତୀୟ ଜୀବନ କ୍ଷେତ୍ରରେ ମଧ୍ୟ ଘୋର ସଙ୍କଟର ଲକ୍ଷଣ । ସମାଜ ଜାତୀୟ ଜୀବନର ଆଶା, ଆକାଂକ୍ଷା ଓ ଅଭୀପ୍ସାକୁ କାବ୍ୟରୂପ ପ୍ରଦାନ କରିବାରେ ଲେଖକମାନେ ବ୍ରତୀ ହେବା ଏକାନ୍ତ କାର୍ଯ୍ୟ ।



**[ ଯେଉଁ ପ୍ରତିଭାଶାଳୀ ସ୍ରଷ୍ଟାମାନଙ୍କର ସୃଷ୍ଟି ସମ୍ଭାରରେ ଏହି ସଙ୍କଳନର କଳେବର ବିମଣ୍ଡିତ, ସେହିମାନଙ୍କ ନିକଟରେ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଅଛୁ ।]**

**— ସମ୍ପାଦକ ମଣ୍ଡଳୀ**

# ବିଷୟ ସୂଚୀ





# ମୌନା ମୌନୀ

ସ୍ୱର୍ଗତ ଫକୀର ମୋହନ ସେନାପତି

---

ପ୍ରାୟ ଅର୍ଦ୍ଧଶତ ବର୍ଷ ପୂର୍ବେ ଖଣ୍ଡଗିରି ଓ ତତ୍ ଚତୁର୍ଦ୍ଦିଗସ୍ଥ ଉପତ୍ୟକା ଭୂମି ବିବିଧ ଜାତୀୟ ବୃକ୍ଷ ଓ ଲତା ଜାଲରେ ବେଷ୍ଟିତ ଥିଲା । କେବଳ ଗୁମ୍ଫା ଓ ସମୀପବର୍ତ୍ତୀ ସ୍ଥାନ 'ଉର୍ଦ୍ଧ୍ୱଦଶନ', ପରିଷ୍କୃତ ପରିଚ୍ଛନ୍ନ, ସାଧୁ ସନ୍ନ୍ୟାସୀମାନଙ୍କ ଆଶ୍ରମରେ ପରିପୂର୍ଣ୍ଣ । ବିଭୂତିଭୂଷଣ କୌପୀନଧାରୀ ସାଧୁମାନେ ଧୂନି ଲଗାଇ ବସିଥାନ୍ତି, ବସ୍ତ୍ରଧାରୀ ସାଧୁମାନେ ନିର୍ଧୂନିକ । ସାଧୁ ନାନା ଶ୍ରେଣୀର—ସନ୍ନ୍ୟାସୀ, ନାଗା, ରାମାଉତ, କେହି ବା ଉପାଧି ରହିତ । ପ୍ରାୟ ପ୍ରତିଦିନ ସାଧୁମାନଙ୍କ ଗତାଗତ ଲାଗିଥାଏ । ଥୋକେ ଚାଲିଯିବା ମାତ୍ରେ ନବାଗତ ସାଧୁମାନେ ଶୂନ୍ୟସ୍ଥାନ ଅଧିକାରକରି ବସୁଥାନ୍ତି । ମୁଦ୍ରିତ-ନେତ୍ର ଥୋକେ ସାଧୁ ଧ୍ୟାନନିମଗ୍ନ । ତୁଳସୀ ବା ରୁଦ୍ରାକ୍ଷମାଳାହସ୍ତ ଥୋକେ ଭଜନରେ ନିଯୁକ୍ତ । କେହି ଗ୍ରନ୍ଥ ପାଠ, କେହି ବା ଗ୍ରନ୍ଥ ଶ୍ରବଣ କରୁଅଛନ୍ତି । କେହି ଗଞ୍ଜିକା ଟିପ୍‌ପନ ସେବନରେ ନିଯୁକ୍ତ । କେହି କେହି ସାଧୁ ଝୁଲିଟିରେ ପୁଷ୍ପମଣ୍ଡିତ ଦେବତା ବିଜେ କରାଇ ଦେଇ ତୀର୍ଥଯାତ୍ରୀମାନଙ୍କଠାରୁ ଅର୍ଥ ସଂଗ୍ରହରେ ମନୋଯୋଗୀ । ବାସ୍ତବରେ ଏହା ଗୋଟିଏ ବିଚିତ୍ର ଦୃଶ୍ୟ । ଏହି ପବିତ୍ର ସ୍ଥାନ ଦର୍ଶନ କଲେ ନିତାନ୍ତ ପାଷାଣ ହୃଦୟ ମଧ୍ୟ ଭକ୍ତିରସରେ ଆପ୍ଲୁତ ହୋଇଯାଏ ।

କେବେ କେବେ ଜମାଉତ ଦଳର ମଧ୍ୟ ଏ ସ୍ଥାନକୁ ଶୁଭାଗମନ ହୋଇଥାଏ । ଏମାନେ କିନ୍ତୁ ଗୁମ୍ଫା ନିକଟକୁ ଯାନ୍ତି ନାହିଁ । ଖଣ୍ଡଗିରି ପାଦ ଦେଶରେ ଦୁଇ ଚାରି ଧୂନି ସ୍ଥାପନ କରି ଅନ୍ୟତ୍ର ଚାଲିଯାନ୍ତି । ଜମାଉତଦଳର ସନ୍ନ୍ୟାସୀ ସଂଖ୍ୟା ଚାଳିଶ ପଚାଶଠାରୁ ହଜାରେ ବାରଶ ପର୍ଯ୍ୟନ୍ତ । ସନ୍ନ୍ୟାସୀମାନଙ୍କ ସାମାନ ବହିବା ନିମନ୍ତେ ଓଟ ଓ ଘୋଡା ଥାନ୍ତି । କଦାଚିତ୍ ହସ୍ତୀର ମଧ୍ୟ ଅଭାବ ନ ଥାଏ । ଗାଈ, ବୃଷଭ ମଧ୍ୟ କାହାରି ଦଳରେ ଥିବାର ଦେଖାଯାଏ । ଜମାଉତର ଅଧିକାରୀଙ୍କର ଉପାଧି, ମହନ୍ତ ବାବା । ଏହି ମହନ୍ତ ବାବାଙ୍କ ଆଜ୍ଞାରେ ଜମାଉତ୍ ଚାଳିତ । ଜଣେ କୋଠାରୀ ଓ ଜଣେ ଭଣ୍ଡାରୀ ଥାଏ । କୋଠାରୀ ଧନ ରକ୍ଷକ, ଭଣ୍ଡାରୀ ଜିମାରେ ଖାଦ୍ୟ ଓ ଅନ୍ୟାନ୍ୟ

ଦ୍ରବ୍ୟ ଥାଏ । ଅଧିକାଂଶ ଜମାଇତ ନିୟତ ଯାଯାବର, ଭାରତର ସର୍ବତ୍ର ଭ୍ରମଣ କରି, ରାଜା ଜମିଦାର ଓ ଧନବନ୍ତ ଲୋକମାନଙ୍କଠାରୁ ଅର୍ଥ ସଂଗ୍ରହରେ ନିଯୁକ୍ତ ଥାନ୍ତି । ସଞ୍ଚିତ ଅର୍ଥ ପ୍ରତି ଛ ମାସକୁ ଥରେ ସନ୍ନ୍ୟାସୀମାନଙ୍କ ମଧ୍ୟରେ ବଣ୍ଟନ କରାଯାଏ । ଅବଶ୍ୟ ମହନ୍ତ ଦିବାଙ୍କ ଭାଗରେ ଅଧିକାଂଶ ପଡ଼ିଥାଏ ସନ୍ନ୍ୟାସୀମାନଙ୍କୁ ଏକତ୍ର ଆବଦ୍ଧ କରି ରଖିବାର ଏହା ଗୋଟିଏ ଉପାୟ ଅଟେ । ଅନେକ ଜମାଇତମାନଙ୍କର ସ୍ଥାନେ ସ୍ଥାନେ ମଠ ଓ ବିପୁଳ ଭୂସମ୍ପତ୍ତି ଅଛି, କେହି କେହି ମହାଜନୀ ମଧ୍ୟ କରିଥାନ୍ତି । ମଫସଲ ଗ୍ରାମ-ମାନଙ୍କରେ ଏମାନଙ୍କର ଭୟଙ୍କର ଜୁଲମ ଥିଲା । ଜମାଇତର ଶୁଭାଗମନ ହେଲେ ଗ୍ରାମବାସୀମାନେ ବ୍ୟତିବ୍ୟସ୍ତ ହୋଇପଡ଼ନ୍ତି । ଭେଦାଦ୍ୱାରା ସାଧୁମାନଙ୍କର ଟହଲ ଚଳାଇ-ବାକୁ ହୁଏ । ଜମାଇତଙ୍କ ସାଧୁସେବା ରାଜବିକେ ବିଶେଷ । ଧୂନି ସକାଶେ ଉପଯୁକ୍ତ ଗଡ଼ି କାଠ ସଂଗୃହୀତ ନ ହେଲେ ଗରିବ ପ୍ରଜାମାନଙ୍କ ଘରର ଖୁମ୍ବ, ଶ୍ରେଣୀ ଲୁଣ୍ଠିତ ହେଉଥିଲା । ଗ୍ରାମରେ ଜମାଇତ ବିଜେ ହେବା ମାତ୍ରକେ ପ୍ରଥମେ ବାଲଭୋଗ, ସାଧୁଙ୍କ ଗଞ୍ଜେଇ ଚର୍ଚ୍ଚ ଓ ଦେବତା ଦର୍ଶନୀ ଦେବାର ନିୟମ । କେହି ବଡ଼ଲୋକ ବା ରାଜା ପ୍ରଥମେ ଉପଯୁକ୍ତ ରୂପେ ଦେବତାଙ୍କଠାରେ ଭେଟି ଦାଖଲ ନ କଲେ ସାଧୁମାନେ ଧୁନି ତିନି ଦିବସ ପର୍ଯ୍ୟନ୍ତ ଉପବାସରେ ପଡ଼ି ରହନ୍ତି । ପ୍ରକୃତରେ ଉପବାସରେ ରହନ୍ତି, କି ନାହିଁ, ଲୋକନେତ୍ରରେ ଅଗୋଚର । ସଙ୍ଗରେ ଜମାଥିବା ମଇଦା ରାତି ଯୋଗେ ଧୂନିରେ ପଡ଼ି ପୋଡ଼ପିଠାରେ ପରିଣତ ହୁଏ । ଧର୍ମପ୍ରାଣ ନିରୀହ ଗ୍ରାମବାସୀ ହିନ୍ଦୁ ପ୍ରଜାମାନେ ନୀରବରେ ସମସ୍ତ ସହ୍ୟ କରୁଥିଲେ । ପ୍ରକୃତ ସାଧୁ ଜମାଇତର ମଧ୍ୟ ଅଭାବ ନ ଥିଲା; ମାତ୍ର ବ୍ୟବସାୟୀ ଅଧିକାଂଶ । ବଙ୍ଗଳାରେ ଡକାଇତ, ପୂର୍ବ ସମୁଦ୍ରଠାରୁ ଦିଲ୍ଲୀ ପ୍ରାଚୀର ପର୍ଯ୍ୟନ୍ତ ସମସ୍ତ ଆର୍ଯ୍ୟାବର୍ତ୍ତରେ ଲୁଣ୍ଠନକାରୀ ପିଣ୍ଡାରୀ ଏବଂ ସମସ୍ତ ଭାରତ ବ୍ୟାପୀ ନାଗା ଜମାଇତଙ୍କ ଉତ୍ପାତରେ ପ୍ରଜାମଣ୍ଡଳୀ ନିତାନ୍ତ ଉତ୍ୟକ୍ତ ହୋଇ ପଡ଼ୁ-ଥିଲେ । ଧନ୍ୟ ଇଂରେଜ ଗଭର୍ଣ୍ଣମେଣ୍ଟ ! ସେମାନଙ୍କ ହସ୍ତରୁ ରକ୍ଷା କରିଅଛନ୍ତି ।

ଝଣ୍ଡିଗିରିବାସୀ ସାଧୁମାନେ ପ୍ରାତଃସ୍ନାୟୀ । ପ୍ରାତଃକାଳରେ ଦେବତାଙ୍କ ଠାରେ ଯେଉଁ ବାଲଭୋଗ ଲାଗେ, ତାହା ସେବା କରି ଭଜନ ପୂଜନରେ ନିଯୁକ୍ତ ହୁଅନ୍ତି । ଅପରାହ୍ଣ ସମୟରେ ଥରେ ମାତ୍ର ପଙ୍ଗତ ହୁଏ । ସନ୍ଧ୍ୟା ଆଳତି ସମୟରେ ଘଣ୍ଟଭେରୀ, ତୂରୀନାଦରେ ଝଣ୍ଡିଗିରି କମ୍ପିତ ହୋଇଉଠେ । ଆଳତି ଉତ୍ତାରେ ରାତି ପ୍ରହରକ ପର୍ଯ୍ୟନ୍ତ ଭଜନ—କାହ୍ନି ବା ଖଞ୍ଜଣୀ ବାଦନ, ଗଞ୍ଜିକାସେବନ ସେବନ ଇତ୍ୟାଦି । ତଦନ୍ତର ଗିରି ନିସ୍ତବ୍ଧ ।

ବର୍ଣ୍ଣିତ ସମୟରେ ଝଣ୍ଡିଗିରିରେ ଯେଉଁ ସମସ୍ତ ସାଧୁସନ୍ନ୍ୟାସୀ ବାସ କରୁଥିଲେ । ସେଥି ମଧ୍ୟରୁ ଗୋଟିଏ ଦଳର ବିଷୟ ଉଲ୍ଲେଖଯୋଗ୍ୟ । ହାତୀଗୁମ୍ଫା ସମ୍ମୁଖରେ ଏହି ଦଳର ମହାରାଜ ଧୂନି ଥାପି ବସିଛନ୍ତି । ଧୂନିର ବିପରୀତ ଦିଗରେ କିଞ୍ଚିତ୍ ଦୂରରେ

ଗୋଟିଏ କ୍ଷୁଦ୍ର ସିଂହାସନରେ ମହନ୍ତ ମଣ୍ଡପରେ ମହାବୀରଜୀ ଦେବତା ବିରାଜିତ । ଦେବତାଙ୍କ ଅଳଙ୍କାର ତୈଳସପନ୍ନାଦି ଆଡମ୍ବରଯୁକ୍ତ । ପ୍ରତିଦିନ ପ୍ରାତଃକାଳରେ ଦେବତାଙ୍କଠାରେ ମୋହନଭୋଗ, ବାଲଭୋଗ ଓ ସାୟାହ୍ନ ସମୟରେ ଫକ୍‌କମାଲ ଅର୍ଥାତ୍ ପୁରି, କଚୁରି ଖିରି ଟେଚୁଡ଼ୀ ଭୋଗଲାଗେ । ଦେବତାଙ୍କ ସେବାରେ ଏତେ ବ୍ୟୟ ; ମାତ୍ର କାହାରିକୁ କିଛି ଯାଚନ୍ତି ନାହିଁ, ମହାବୀର ମହାପ୍ରଭୁଙ୍କ ମହାମହିମା ବଳରେ ସବୁ ଚଳିଯାଏ । ମହନ୍ତ ମହାରାଜ ନିତାନ୍ତ ନିର୍ଲୋଭ, କେହି ଭକ୍ତ ଦେବତାଙ୍କୁ କିଛି ପ୍ରଣାମୀ ଦେଲେ ଟଙ୍କା ପଇସା ସେହିଠାରେ ପଡ଼ି ରହିଥାଏ, ମହନ୍ତ ମହାରାଜ ଥରେ ସୁଦ୍ଧା ଛୁଅନ୍ତି ନାହିଁ । ସାଧାରଣରେ ପ୍ରକାଶ ଯେ ଦୈନିକ ଦେବ ସେବାରେ ଉପଯୁକ୍ତ ବ୍ୟୟ ସକାଶେ ମହନ୍ତଙ୍କ ଧୂନିରୁ ସୁନା ବା ରୂପା ବାହାରିଥାଏ । ବାହାରର ବିଶ୍ୱାସୀ କେହି କେହି ଭକ୍ତ ଏହା ପ୍ରତ୍ୟକ୍ଷ ଦେଖିଅଛନ୍ତି । ଭୁବନେଶ୍ୱର ପ୍ରଭୃତି ସ୍ଥାନରୁ ବଣିଆମାନେ ଆସି ତାହା କିଣିଆଣନ୍ତି । କିଣା ବିକା ବେଳେ ଦରଦାମ ନାହିଁ । ସାଧୁଲୋକ କି କଷାକଷି ଦରଦାମ କରିବେ ? କେବଳ ମହନ୍ତବାବା ଏତିକି କଥା ବୋଲି କହି ତୁନି ହୁଅନ୍ତି, "ଦେଓକା ମାଲ ଦେଓ ଦିଆ । ଦେଓତକା ସେବା, ତୁମାରି ଧରମ ।" ବଣିଆର ଯାହା ଇଚ୍ଛା ଦେଇ ସୁନା ରୂପା ନେଇଯାଏ । ଏକଥା ମଧ୍ୟ ଶୁଣା ଅଛି, ପ୍ରତିଦିନ ଧୂନିରୁ ଯାହା ବାହାରିବ, ପ୍ରତିଦିନ ବ୍ୟୟ କରିବାକୁ ହେବ, ବାକି ରହିଲେ ଆଉ ବାହାରିବ ନାହିଁ । ମହାବୀରକା ଏସା ହୁକୁମ । ବ୍ୟୟ ଉଣା ନୁହେଁ — କେବଳ ଗଞ୍ଜେଇ ପ୍ରତିଦିନ ଅଢ଼େସେର ଅଭ ସେଥିରେ ଉପଯୁକ୍ତ ଧୂଆଁ ପଡ଼େ । ପ୍ରସାଦ ସେବା ନିମନ୍ତେ ଅନେକ ଗାଉଁଲି ଚୁଙ୍ଗି ହୁଅନ୍ତି । ମହନ୍ତ ବାବାଙ୍କ ଆସନ ପାଖରେ କଦାଚିତ ରାତିରେ ବୋତଲ (କାଚକୁମ୍ପା)ଦେଖାଯାଏ । ସେଥିରେ ଗଙ୍ଗାଜଳ ଆସିଥାଏ । ସନ୍ଧ୍ୟା ଆଳତି ଉତ୍ତାରେ ମହନ୍ତବାବା ଓ ଚେଲାମାନେ କିଞ୍ଚିତ୍ କିଞ୍ଚିତ୍ ଗଙ୍ଗୋଦକ ସେବା କରନ୍ତି । ଗୋଟାଏ ବଡ଼ ଗୁମ୍ଫାରେ ସାଧୁମାନଙ୍କ ସାମାନ ପୂର୍ଣ୍ଣ ଥାଏ । ସ୍ୱୟଂ ମହନ୍ତ ଏ ତାହାଙ୍କ ବିଶ୍ୱାସୀ ଦୁଇଜଣ ଚେଲା ଛଡ଼ା ସେ ଗୁମ୍ଫା ମଧ୍ୟକୁ ଯିବାର ଅନ୍ୟ କାହାରି ଅଧିକାର ନାହିଁ ।

ମହନ୍ତ ବାବାଙ୍କ ନାମ ମହାବୀର ଦାସ—ଦୀର୍ଘାକୃତି, ବ୍ୟାୟାମସାଧିତ ପ୍ରାୟ ମାଂସ ପେଶୀ ସୁଦୃଢ଼, ବଳୀବର୍ଦ୍ଦବତ୍, ବଳିଷ୍ଠ । ମସ୍ତକରେ ଦୀର୍ଘାକାର ଜଟାଭାର ଅହିରାଜ ଶିଶୁବତ୍ କୁଣ୍ଡଳୀକୃତ ଓ ବେଣୀଦ୍ୱାରା ସୁଦୃଢ଼ ରୂପେ ଆବଦ୍ଧ । ଶ୍ମଶ୍ରୁ ଓ ନଖ ମାତ୍ରା ଅନୁପାତରେ ଦୀର୍ଘାକାର ନୁହେଁ । ଦେହର ବର୍ଣ୍ଣ ବୋଲିଯାଇ ନ ପାରେ, କାରଣ ସ୍ଥୂଳ ରୂପେ ବିଭୂତିମଣ୍ଡିତ ନେତ୍ର । ଗଞ୍ଜିକା ଧୂମରେ ଜବାକୁସୁମସଙ୍କାଶ ରକ୍ତବର୍ଣ୍ଣ ଏବଂ ଚଞ୍ଚଳ । ଦୃଷ୍ଟି ନିତାନ୍ତ ତୀବ୍ର ଓ ଭୟପ୍ରଦ । କେହି ନବାଗତ ଯାତ୍ରୀ ବା ଭକ୍ତ ଉପସ୍ଥିତ ହେଲେ ତାହାଙ୍କୁ ତୀବ୍ର ଦୃଷ୍ଟିରେ ଆପାଦମସ୍ତକ ନିରୀକ୍ଷଣ କରିଥାନ୍ତି । ସର୍ପବେଷ୍ଟିତ

ଅର୍ଦ୍ଧଦଗ୍ଧ ପରିମିତ ଗଞ୍ଜେଇ ଚିଲମଟିଏ ମହନ୍ତଙ୍କ ହସ୍ତରେ ସର୍ବଦା ଶୋଭା ପାଉଥାଏ । ମହନ୍ତ ବାବାଙ୍କ ବୟସ ଅନୁମାନରେ ପଞ୍ଚାଶ ଲଗାଇବି; ମାତ୍ର ତପସ୍ୟାରେ ସିଦ୍ଧ ସାଧୁମାନଙ୍କ ବୟସ କଳାହୁଏ ନାହିଁ । ଚେଲାମାନଙ୍କ ମୁଖରୁ ଶୁଣାଯାଏ, ବୟଃକ୍ରମ ଅଢେଇଶ ବରଷ । ମହନ୍ତ ବାବା ମଧ୍ୟ ଭକ୍ତମାନଙ୍କଠାରେ ସେହି ଭାବରେ କଥାବାର୍ତ୍ତା କରିଥାନ୍ତି । ହଜାରେ ବରଷ ବୟସର ସାଧୁ ଦର୍ଶନ କରିବାକୁ ଯଦି କାହାର ଇଚ୍ଛା ଥାଏ, ତେବେ ବାଲେଶ୍ୱର ସହର ମଧ୍ୟରେ ଦୁଧପିଆ ବାବାଜୀଙ୍କୁ ଦେଖିବାକୁ ଯାଆନ୍ତୁ । ଏହି ବାବାଜୀ ସ୍ୱୟଂ ସର୍ବଦା ଲୋକମାନଙ୍କଠାରେ ପ୍ରକାଶ କରିଥାନ୍ତି, ଯେ ପୁରୀ ମନ୍ଦିର ପ୍ରତିଷ୍ଠାରେ ଭୋଜି ଖାଇଥିଲେ । ମୁଗଲଆ ଅମଳରେ ସେ ବଲଙ୍କାରେ ଥିଲେ । ମାତ୍ର ଦେଖିଲେ ବୟସ ଷାଠିଏରୁ ଉର୍ଦ୍ଧ୍ୱ ବୋଧ ହୁଏ ନାହିଁ । ଏହି ବାବାଜୀଙ୍କର ଭାରି ମହିମା ଥିଲା । ଦିବାନିଶି ଟିକ୍କେଇ ଆଉ ଦୁଧ ଛଡ଼ା ଅନ୍ୟ ଦ୍ରବ୍ୟ ସେବା କରୁ ନ ଥିଲେ । ସହର ମଧ୍ୟରେ ବିଶ୍ୱାସୀ ଭକ୍ତବୃନ୍ଦଙ୍କର ଅଭାବ ନାହିଁ । ଦଳ ଦଳ ଅମଲା, ମୁକ୍ତାର, ମହାଜନ, ଜମିଦାର ବାବାଜୀଙ୍କ ପାଦତଳେ ଲୁଣ୍ଠିତ ହେଉଥିଲେ । ରାଜଭୋଗରେ ମଠରସେବା ଚଳୁଥିଲା; ମାତ୍ର ଅଜାକୁ କେତେକ ବରଷ ହେଲା ଶକ୍ତି ପ୍ରଭାବରେ ବାବାଜୀ ବାଲଗୋପାଳ ଦେନ ଗୃହସ୍ଥାଶ୍ରମ ଅବଲମ୍ବନ କରିଅଛନ୍ତି । ଭକ୍ତବୃନ୍ଦ ଅନ୍ତର୍ଦ୍ଧାନ । କଥିତ ଅଛି । ସନ୍ନ୍ୟାସୀ ଓ ମୋଗଲମାନଙ୍କ ବୟସ ଜାଣିବା ନିତାନ୍ତ କଠିନ । ଏମାନେ ନିଜସ୍ୱ ବୟସ ସଂଖ୍ୟାରେ ଯୋଗ ବିୟୋଗ କରିଥାନ୍ତି । ଯେଉଁ ସାଧୁର ବୟସ ପଞ୍ଚାଶ, ସେ ଆଉ ଏକ ଶତ ସଂଖ୍ୟା ଯୋଗକରି ଦେଢ଼ଶତ କରିବେ । ମୋଗଲଙ୍କର, ବୟସ ବିୟୋଗ । ଯାହାର ବୟସ ପଞ୍ଚାଶ ସେ ପଚିଶ ବିୟୋଗ କରି ବାକି ପଚିଶ ରଖିବେ । ଗୋଟିଏ ପୁରୁଣା କଥା ମନରେ ପଡ଼ିଲା, ପାଠକ ମହାଶୟ, ବିରକ୍ତ ହୁଅ ନାହିଁ, ସେ କଥାଟା କହୁ ନ ବୋଲି ରହିପାରୁ ନାହୁଁ । "କୌଣସି ସ୍ଥାନରେ ଦୁଇ ଜଣ ବୃଦ୍ଧ ଓ ଜଣେ ବିଂଶତି ବର୍ଷବୟସ୍କ ଯୁବା ମୋଗଲ ବସିଥିଲେ କଥା ପ୍ରସଙ୍ଗରେ ପରସ୍ପରର ବୟସ ବିଷୟରେ ପ୍ରଶ୍ନ ହେଲା । ଯାହାର ସତୁରି ବରଷ ବୟସ, ସେ କହିଲେ, ତାଙ୍କର ବୟସ ତିରିଶ । ଦ୍ୱିତୀୟ ବୃଦ୍ଧର ବୟସ ଷାଠିଏରୁ ଉର୍ଦ୍ଧ୍ୱ, ମାତ୍ର ପ୍ରଶ୍ନର ଉତ୍ତର ଦେଲେ —ସାହେବ୍ ମେରା ଉମର ମୁଜକୁ ମାଲୁମ୍ ନେହିଁ ହେ, ଲେକିନ୍ ମେରା ବଡ଼ା ଭାଇକା ଉମର ତିଶ୍‌କି ନଜିକ୍ । ଯୁବା ମୋଗଲକୁ ବୟସ ବିଷୟରେ ପ୍ରଶ୍ନ ହେବାରୁ ସେ ଉତ୍ତର ଦେଲା—ହଜୁର, ଲୋଗ୍ ଉମରକା ଯୋ ହିସାବ୍ ଲଗାଏଁ ହେଁ, ମେରା ପଇଦା ବି ହୁଆ ନେହିଁ । ଅର୍ଥାତ୍ ତାହା ବୟସ ସଂଖ୍ୟାକୁ କୋଡ଼ିଏ ବାଦ ଦେଲେ ବାକି କିଛି ରହୁ ନାହିଁ ।" ଯାଉ ସେ ଅଳଣା କଥାଗୁଡ଼ାକ ଛୁଡ଼, ଏବେ ପ୍ରକୃତ କଥା ଧରାଯାଉ ।

ମହନ୍ତବାବାଙ୍କ ଦଳର ସାଧୁ ସଂଖ୍ୟା ପ୍ରାୟ ପଚିଶ । ସେଥି ମଧ୍ୟରୁ ମଧ୍ୟ ସମୟ ସମୟରେ ଆଠ ଦଶଜଣ ନୂଆ ପୁରୁଣା ହୋଇଥାନ୍ତି; ଅର୍ଥାତ୍ ଥୋକେ ସାଧୁ ବାହାର

ଥିବାମାତ୍ରେ ନୂତନ ସାଧୁ ଆସି ସେହି ସ୍ଥାନ ପୂର୍ଣ୍ଣ କରନ୍ତି । ଆଶ୍ଚର୍ଯ୍ୟର ବିଷୟ, ପ୍ରାୟ ସମସ୍ତ ସାଧୁ ସମାନ ବୟସ୍କ, ସମାନ ଆକାର, ରୂକ୍ଷରୂପେ ବେଶଭୂଷଣ । ସମସ୍ତେ ବନ୍ୟ ବରାହବତ୍ ବଳିଷ୍ଠ ଓ ନିରଳସ । ମସ୍ତକ ନିର୍କେଶ । କ୍ଷୁଦ୍ର ବା ବାବ୍ରୀ କେଶମଣ୍ଡିତ । କ୍ଷୁଦ୍ରାକାର ଶ୍ମଶ୍ରୁ ବିଶିଷ୍ଟ, ସମସ୍ତଙ୍କ ଦେହରେ ଗୈରିକ ଅଙ୍ଗା ଆକଣ୍ଠ ପଲମ୍ବିତ । ସ୍ୱଭାବ ଓ କଥୋପକଥନ ନିତାନ୍ତ କର୍କଶ । ଦୃଷ୍ଟି ତୀବ୍ର ଓ ଭୟବିଭ୍ରମ-ବ୍ୟଞ୍ଜକ । ସାଧୁମାନଙ୍କ କଥିତ ଭାଷା ହିନ୍ଦି । ୟୁରୋପ ଖଣ୍ଡରେ ଫରାସୀ ଯେପରି ସାର୍ବଭୌମ ଭାଷା, ଭାରତରେ ସେହିପରି ହିନ୍ଦିଭାଷା ସର୍ବସ୍ଥାନ ବ୍ୟାପୀ । ସାଧୁ ସନ୍ନ୍ୟାସୀମାନେ ଭାରତର ସର୍ବ ସ୍ଥାନରେ ଭ୍ରମଣ କରନ୍ତି, ସୁତରାଂ ବାଧ୍ୟହୋଇ ହିନ୍ଦି ବୋଲିବାକୁ ହୁଏ । ଯାହାର ମାତୃଭାଷା ହିନ୍ଦି, ତାହାକୁ ଅସୁବିଧା ଭୋଗ କରିବାକୁ ହୁଏ ନାହିଁ ।

ଆମ୍ଭମାନଙ୍କ ସାଧୁଦଳର ଭାଷା ନୀଚ ଶ୍ରେଣୀ କଥିତ ବଙ୍ଗଳା ଅଥବା ବଙ୍ଗ-ହିନ୍ଦି ଭାଷାର କଦର୍ଯ୍ୟ ସମିଶ୍ରଣ । ଏହି ସାଧୁଦଳ ଭଜନ ପୂଜନ ବିଷୟରେ ନିଯୁକ୍ତ ଥିବାର କଦାଚିତ୍ ଦେଖାଯାଏ । ଗଞ୍ଜିକା ଟିପ୍‌ପନ, ସେବନ ଓ ପଙ୍ଗତ ସାମଗ୍ରୀ ଆୟୋଜନରେ ସର୍ବଦା ବ୍ୟସ୍ତ ଥାନ୍ତି । ସମସ୍ତ ସାଧୁ ମହନ୍ତ ବାବାଙ୍କର ନିତାନ୍ତ ଅନୁଗତ ।

ହାତୀଗୁମ୍ଫା ସମୀପବର୍ତ୍ତୀ ଆଉ ଗୋଟିଏ କ୍ଷୁଦ୍ର ଗୁମ୍ଫାରେ ଗୋଟିଏ ସାଧୁ ଦମ୍ପତି ଆଶ୍ରମ ସ୍ଥାପନ କରିଥିଲେ । ବାବାଜୀଙ୍କ ବୟସ ଆନୁମାନିକ ତିରିଶ ବା ବତିଶ । ଦେହ ସୁସ୍ଥ ଓ ସବଳ । ଯେପରି ଗଠନ ହେଲେ ଲୋକେ ସୁନ୍ଦର ପୁରୁଷ ବୋଲନ୍ତି, ଏହାଙ୍କ ଦେହ ସେହିପରି । ଦୃଷ୍ଟିପାତ ବ୍ୟାଧ ଭୀତ ମୃଗବତ୍ ଚକିତ ଓ ଭୀତବ୍ୟଞ୍ଜକ । ସର୍ବଦା ଲୋକଲୋଚନ ଅନ୍ତରାଳରେ ଗୁମ୍ଫା ମଧ୍ୟରେ ଆସୀନା, ସଯତ୍ନାବୃତବଦନା ମାତାଜିର ବୟସ ବା ରୂପକାନ୍ତି ନିର୍ଣ୍ଣୟ କରିବା କଥିତ ଅସାଧ୍ୟ ବ୍ୟାପାର । ମାତ୍ର ତାଙ୍କର ପୃଷ୍ଠବ୍ୟାପୀ ନିତମ୍ବସ୍ପର୍ଶୀ । ନବୀନ ନୀରଦ ସଦୃଶ କେଶରାଶି ଓ ସଙ୍କୀର୍ଣ୍ଣ ମଧ୍ୟଭାଗ ଏବଂ ପାଦଯୁଗଳର ବର୍ଣ୍ଣ ଓ ଗଠନ ଠାଣି ଦେଖିଲେ ଜଣାଯାଏ, ମାତାଜି ପରମାସୁନ୍ଦରୀ ଓ ପୂର୍ଣ୍ଣ ଯୌବନ ଶ୍ଳିଷ୍ଟା । ଏହି ସାଧୁଦମ୍ପତି ପଦାକୁ ବାହାରନ୍ତି ନାହିଁ । ସର୍ବଦା ଗୁମ୍ଫା ମଧ୍ୟରେ ରହିଥାନ୍ତି । କାହାରି ସହିତ କିଛି ମାତ୍ର କଥା ବୋଲନ୍ତି ନାହିଁ, ଏଥି ସକାଶେ ଲୋକମାନେ ଏହାଙ୍କୁ ମୌନୀ ବାବାଜୀ ଓ ମୌନୀ ମାତା ବୋଲନ୍ତି । ସାଧୁ ଅନ୍ୟ ସାଧୁର ସହାୟ । ଆମ୍ଭମାନଙ୍କ ଉଲ୍ଲିଖିତ ମହନ୍ତ ବାବା ମୌନୀ ମୌନୀଙ୍କ ଆବଶ୍ୟକ ଦ୍ରବ୍ୟାଦି ସଂଗ୍ରହ କରି ଦେବାର ଦେଖାଯାଏ ।

ସାଧୁ ଦର୍ଶନାର୍ଥୀ ଯାତ୍ରୀମାନେ ଖଣ୍ଡଗିରିକୁ ଆସି ସେହି ଦିନମାନରେ ଚାଲିଯାନ୍ତି, କେହି ରାତ୍ରିବାସ କରେ ନାହିଁ । ମାତ୍ର ଆଜକୁ ମାସାବଧି ଗତ ହେଲା, ଦୁଇଜଣ ବଙ୍ଗ ଦେଶୀୟ ସାଧୁ ସେବାପରାୟଣ ଯାତ୍ରୀ ବାସ କରି ରହି ଅଛନ୍ତି । ସାଧୁମାନେ କେବଳ

ଧୂନିର ବିଭୂତି ଦେଇ ଲୋକମାନଙ୍କର ଅନେକ ଉତ୍କଟ ପୀଡ଼ା ଆରୋଗ୍ୟ କରିଥାନ୍ତି । ଆମ୍ଭମାନଙ୍କର ମହନ୍ତ ବାବା ମଧ୍ୟ ନେତ୍ର ମୁଦ୍ରିତ କରି ଅନେକ ଲୋକଙ୍କୁ ବିଭୂତି ବିତରଣ କରିବାର ଦେଖାଯାଏ । ଆମ୍ଭମାନଙ୍କ ଭକ୍ତ ଯୁଗଳ ଅନିର୍ଦ୍ଦିଷ୍ଟ ଉତ୍କଟ ପୀଡ଼ାରେ ପୀଡ଼ିତ । ଆରୋଗ୍ୟ କାମନାରେ ମହନ୍ତ ବାବା ଓ ଅନ୍ୟାନ୍ୟ ସାଧୁଙ୍କ ସେବାରେ ପ୍ରାତଃକାଳଠାରୁ ରାତ୍ର ପ୍ରହରକ ପର୍ଯ୍ୟନ୍ତ ନିଯୁକ୍ତ ଥାନ୍ତି । ନିଜ ବ୍ୟୟରେ ଭୁବନେଶ୍ୱର ବଜାରରୁ ଭଲ ଭଲ ଗୋଲ ଗୋଲ ଜଟାବାଲା ଗଞ୍ଜେଇ କ୍ରୟ କରି ଆଣି ସାଧୁମାନଙ୍କୁ ସେବନ କରାଇଥାନ୍ତି । ଭଲ ଗଞ୍ଜେଇ ସଂଗ୍ରହ କାମନାରେ ସେମାନଙ୍କୁ କେବେ କେବେ ପୁରୀକୁ ମଧ୍ୟ ଯିବାକୁ ହୁଏ । ମୌନୀ ମୌନୀ ସାଧୁଦମ୍ପତି ପ୍ରତି ମଧ୍ୟ ଏମାନଙ୍କର ଅଚଳା ଭକ୍ତି । ସେମାନେ ମୌନାବଲମ୍ବନ କରି ରହିଥିଲେ ମଧ୍ୟ ସେମାନଙ୍କୁ ଗୁମ୍ଫା ଦ୍ୱାର ନିକଟରେ ଗୃହି ବସିଥାନ୍ତି । କଦାଚିତ୍ ବାଲଭୋଗ ସକାଶେ ମିଷ୍ଟାନ୍ନ ବା ଫଳମୂଳ କିଣି ଆଣି ଦେଇ ସାଧୁଦମ୍ପତିଙ୍କୁ ଦଣ୍ଡବତ କରି ଆସନ୍ତି ।

ଆଦ୍ୟ ପ୍ରାତଃକାଳରେ ଖଣ୍ଡଗିରିରେ ଭାରି ହୁଲସ୍ଥୂଲ ପଡ଼ିଯାଇଅଛି । ପୁରୀ ଜିଲ୍ଲାର ସ୍ୱୟଂ ମେଜେଷ୍ଟର ସାହେବ ଉପସ୍ଥିତ । ରାତି ନ ପାହୁଣୁ ଖଣ୍ଡଗିରି ସମ୍ମୁଖରେ ଚାରି ପାଞ୍ଚଟା ତେମ୍ବୁ ଟଣା ହୋଇଗଲାଣି । ଗୋଟିଏ ବଡ଼ ତେମ୍ବୁରେ ମେଜ କୁରିଚ ଲଗାଇ ସାହେବ କଚେରୀ କରି ବସିଅଛନ୍ତି । ସାଙ୍ଗରେ ଚାରିଜଣ ପୋଲିସ୍ ଦାରୋଗା, ଆଠଜଣ ମୁନ୍‌ସି, କୋଡ଼ିଏ ଭଲ ଜମାଦାର, ଶହେ ପର୍ଯ୍ୟନ୍ତ ବରକନ୍ଦାଜ, ଦୁଇ କି ତିନିଶହ ଲମ୍ବ ଲମ୍ବ ବାଉଁଶ ଠେଙ୍ଗାଧାରୀ ଚୌକିଦାର । ପୋଲିସ କର୍ମଚାରୀମାନେ ହାତାଧାରି ଜଗତବେଢ଼ ପରି ଖଣ୍ଡଗିରିଟାକୁ ଘେରି ଅଛନ୍ତି । ବାହାରିବାର କାହାର ଅଧିକାର ନାହିଁ । ସାଧୁ ସନ୍ନ୍ୟାସୀମାନେ ଧରା ହୋଇ ଆସି ମେଜେଷ୍ଟର ସାହେବଙ୍କ ତେମ୍ବୁ ସମ୍ମୁଖରେ ଖୁଆଡ଼ ହେଲେ । ଦିନଯାକ ତଦନ୍ତ ହେଲେ । ଦିନଯାକ ତଦନ୍ତ ହେଲା, ଅପରାହ୍ନ ସମୟରେ ଆମ୍ଭମାନଙ୍କ କଥିତ ଭକ୍ତଯୁଗଳଙ୍କ ସନାକ୍ତ ଦେବା ମୁତାବକ ପୂର୍ବବର୍ଣ୍ଣିତ ମହନ୍ତ ବାବା ମହାବୀର ଦାସ ଓ ତାହାଙ୍କ ସଙ୍ଗୀ ପଚିଶ ଜଣ ସନ୍ନ୍ୟାସୀ । ସେମାନଙ୍କୁ ଛାଡ଼ି ଅନ୍ୟ ଦଶଜଣ ସାଧୁ ହାତରେ ହାତକଡ଼ି ଦିଆଯାଇ ଭୂରଙ୍ଗରେ ଠୁଙ୍କି ଦିଆଗଲା । ଆମ୍ଭମାନଙ୍କ ମୌନୀ ବାବାଜୀଙ୍କର ମଧ୍ୟ ସେହି ଦଶା । ମୌନୀ ମାତା ପୋଲିସ ହେପାଜତରେ ରହିଲେ । ମୌନୀ ବାବାଜୀଙ୍କ ଗୁମ୍ଫା ଓ ମାତା ଗୁମ୍ଫାରୁ ଅନେକ ସୁନା ରୂପା ଅଳଙ୍କାର ଓ ଜହରତ୍, ଅନେକ ମୂଲ୍ୟବାନ୍ ଲୁଗା, ସାଲ ପ୍ରଭୃତି ବରାମଦ ହେଲା । ମେଜେଷ୍ଟର ସାହେବଙ୍କ ହୁକୁମ ଅନୁସାରେ ଅନ୍ୟାନ୍ୟ ସାଧୁ ସନ୍ନ୍ୟାସୀ ବଡ଼ିତ ହେଲେ । ଉତ୍କଳର ନୈମିଷାରଣ୍ୟ ଖଣ୍ଡଗିରି ସେହିଦିନଠାରୁ ସାଧୁଶୂନ୍ୟ ହୋଇଅଛି ।

ପରଦିନ ପ୍ରାତଃକାଳରେ ମେଜେଷ୍ଟର ସାହେବ ବନ୍ଦୀମାନଙ୍କୁ ଉପଯୁକ୍ତ ପୋଲିସ ହେପାଜତରେ କଲିକତା ଚାଲାଣ ଦେଇ ପୁରୀ ରମାନା ହେଲେ ।

ପାଶ୍ଚାତ୍ ପ୍ରକାଶ ପାଇଲା, ଉଲ୍ଲିଖିତ ମହାବୀର ଦାସ ମହନ୍ତ ବଙ୍ଗ ଦେଶର ପ୍ରସିଦ୍ଧ ଜାଗା ଗୁଆଲ୍ଲ ଡକାଏତ୍ ସର୍ଦ୍ଦାର, ଅନ୍ୟାନ୍ୟ ସାଧୁମାନେ ସଙ୍ଗୀ ଡକାଏତ୍ । ଅନ୍ୟ ଦଶଜଣ ସାଧୁ ଅନ୍ୟାନ୍ୟ ଜିଲ୍ଲାର ଫେରାର ଆସାମୀ । ମୌନୀ ବାବାଜୀ କଲିକତାର ଜଣେ ପ୍ରସିଦ୍ଧ ବଡ଼ ଲୋକଙ୍କ ଗୁମାସ୍ତା । ମୌନୀ ମାତା ତାହାଙ୍କ ପରିବାରସ୍ଥ ବିଧବା ବଧୂ । ଉକ୍ତ ବଡ଼ଲୋକଙ୍କ ସ୍ଥାନରେ ଡକାଏତି, ଅନେକ ମାଲ ବରାମଦ୍ ହୋଇଅଛି । କଥିତ ଭକ୍ତଯୁଗଳ ଠଗି କମିଶନରଙ୍କ ଡିଟେକ୍ଟିଭ ପୋଲିସ ଅଫିସର ଅଟନ୍ତି ।



# ସତର ବର୍ଷ ପରେ

ସ୍ୱର୍ଗତ ଗୋଦାବରୀଶ ମହାପାତ୍ର

---

## ଏକ

ସେ ଅଞ୍ଚଳର ଲୋକେ ମନମୋହନ ବାବୁଙ୍କୁ ସତର ବର୍ଷ ହେଲା ସମ୍ପୂର୍ଣ୍ଣ ଭୁଲି ଯାଇଥିଲେ । ସତର ବର୍ଷ ତଳେ ସେ ଆସିଥିଲେ ସେଠାକୁ ପୁଲିସ ସବ୍‌ଇନ୍‌ସପେକ୍ଟର ଭାବରେ । ସବ୍‌ଇନ୍‌ସପେକ୍ଟର ଭାବରେ ସେ ସେଠାରେ ରହିଲେ ମୋଟେ ବର୍ଷେ ଦୁଇଟି । ସେହି ଦୁଇବର୍ଷ ଭିତରେ ସେ ଅଞ୍ଚଳରେ ଏପରି ଐତିହାସିକ ଘଟଣା ଘଟିଲା । ସେତେବେଳେ ଅନେକ ଲୋକ ମନେ କରିଥିଲେ କାଳକାଳକୁ ତାହା ରହିବ । ସମୁଦ୍ର ଉପରେ ଯେତେବେଳେ ଉତ୍ତାଳ ତରଙ୍ଗ ଉଠେ ଦେଖିବା ଲୋକେ ସେଥିରେ ଅଭିଭୂତ ହୋଇ ପଡ଼ନ୍ତି । ଅନେକ ଆତଙ୍କିତ ହୋଇ ପଡ଼ନ୍ତି । ସେତେବେଳେ ସେମାନେ ମନେ କରିଥାନ୍ତି ତାହା ସମୁଦ୍ରରେ ଅଙ୍କିତ ହୋଇ ରହିଗଲା । କିନ୍ତୁ କିଛି ସମୟ ପରେ ତାହା ଲିଭିଯାଏ । ମନମୋହନ ବାବୁ ସେ ଅଞ୍ଚଳରେ ପୁଲିସ ସବ୍‌ଇନ୍‌ସ୍‌ପେକ୍ଟର ଥିଲାବେଳେ ସେଠାରେ ସାଧାରଣ ସାମାଜିକ ଜୀବନ ଭିତରେ ଯେତେ ତରଙ୍ଗ ଉଠିଥିଲା, ତାହା ସବୁବେଳେ ଜୀବନ୍ତ ରହିବ ବୋଲି ଅନେକ ମନେ କରିଥିଲେ । ମନମୋହନ ବାବୁ ଚାଲିଗଲେ । ତା ପରେ ସତର ବର୍ଷ ଭିତରେ ସାତଜଣ ସବ୍‌ଇନ୍‌ସ୍‌ପେକ୍ଟର ସେ ଆସି ରହିଲେ । ଶେଷ କର୍ମଗ୍ରହୀଙ୍କ ସମୟକୁ ଲୋକେ ମନମୋହନ ବାବୁଙ୍କ ରାଜୁତିର ସ୍ଥାନରେ ଇତିହାସକୁ ସମ୍ପୂର୍ଣ୍ଣ ପାଶୋରି ଯାଇଥିଲେ ।

ଦୀର୍ଘ ସତରବର୍ଷ ପରେ ଦୈବଦିନ ମନମୋହନ ବାବୁ ପୁଣି ସେଠାକୁ ଆସିଲେ, ବହୁ ପରିଚିତ ମୁଖ ସେ ଦେଖିବାକୁ ପାଇଲେ ଏବଂ ଅନେକ ଲୋକ ତାଙ୍କୁ ଦେଖି ନିଜ ନିଜର ସତର ବର୍ଷ ତଳର ପରିଚୟ ବି ଦେଲେ । ମନମୋହନ ବାବୁ ସେଠାକୁ ଆସିଥିଲେ ଯୌବନରେ । ଦ୍ୱିତୀୟବାର ଆସିଲାବେଳକୁ ଯୌବନ ଶେଷ ହୋଇ ଜୀବନ ବାର୍ଦ୍ଧକ୍ୟରେ ପରିଣତ ହେବାକୁ ଯାଉଛି । ତେଣୁ ତାଙ୍କ ଚେହେରା ଦେଖି କେହି କେହି ଦୋଦୋ ଚିହ୍ନା ହେଲା ପରି ପଚାରିଲେ—ଆପଣଙ୍କ ପରି ଜଣେ

ଏଠାକୁ ଆଗେ ଆସିଥିଲେ; ମାତ୍ର ସେ ଜଣେ ଖୁବ୍ ଜୁଆନ୍ ଲୋକ ଥିଲେ । ଏକଥା ଶୁଣି ମନମୋହନ ବାବୁ ହସି ଦିଅନ୍ତି, ହସି ଦେଇ କହନ୍ତି—ସେ ହେଉଛନ୍ତି ମନମୋହନ ବାବୁ ଯେ କି ଜୁଆନ୍ ଥିଲେ; ଆଉ ମୁଁ ହେଉଛି ମନମୋହନ ବାବୁ ଯେ କି ଏବେ ବୁଢ଼ା ହୋଇ ଗଲିଣି ।

ଦୀର୍ଘ ସତର ବର୍ଷ ପରେ ମନମୋହନ ବାବୁ ଯେ ସେ ଅଞ୍ଚଳକୁ ଆସିଲେ ପୁଲିସ୍ ସବ୍-ଇନ୍‌ସପେକ୍ଟର ଭାବରେ ଆସିଲେ ନାହିଁ, ସେ ଆସିଲେ ଡ଼ି. ଏସ୍. ପି. ଭାବରେ । ନିଜର କାର୍ଯ୍ୟ ଦକ୍ଷତା ଫଳରେ, ସେ ଅଞ୍ଚଳରୁ ଯିବା ପରେ ପରେ ମୋଟେ ବର୍ଷ ଦଶଟା ଭିତରେ ସେ ଡ଼ି. ଏସ୍. ପି ହୋଇ ପାରିଥିଲେ । ଡ଼ି. ଏସ୍. ପି. ମନମୋହନ ବାବୁ ଯେତେବେଳେ ଥାନାରେ ପ୍ରଥମେ ଆସି ପହଞ୍ଚିଲେ ତାଙ୍କୁ କିଛି ନୂଆ ଦେଖାଗଲା ନାହିଁ । ସେ ଦେଖିଲେ ସତର ବର୍ଷ ତଳେ ଯେଉଁ ଗୁଳଘର ପାଞ୍ଚ ପ୍ରସ୍ଥ ହୋଇ ଛପର ହୋଇଥାଏ, ତାହା ସେପରି ଛପର ହୋଇଛି । ଯେଉଁ ଧୁଳି ଚୌକି ବାହାରେ ପଡ଼ିଥାଏ ତାହା ସେପରି ପଡ଼ିଛି । ସେହି ଟେବୁଲ, ସେହି ବେଞ୍ଚ ସେହିପରି ସ୍ଥାନରେ ରହିଛି । ସବୁ ଏକାପରି ତାଙ୍କୁ ଦେଖାଗଲା; କିନ୍ତୁ ଗୋଟିଏ କଥା ଦେଖି ସେ ଅନ୍ୟମନସ୍କ ହୋଇ ପଡ଼ିଲେ । ତାହା ହେଉଛି ଥାନା ଦୁଆରେ ହତା ଭିତରେ ଗୋଟିଏ ନଡ଼ିଆ ଗଛ । ସେହି ନଡ଼ିଆଗଛକୁ ଦେଖି ସେ ଏକଲୟରେ କ'ଣ ଭାବିଠିଆ ହେଲେ, ଗଛର ତଣ୍ଟି ଉପର ଯାଏଁ କେବଳ ଚାହିଁବାରେ ଲାଗିଲେ ପିଣ୍ଡାରୁ ଓହ୍ଲାଇ ଗଛମୂଳକୁ ଚାଲିଗଲେ, ପୁଣି ଗଛମୂଳରୁ ପିଣ୍ଡା ଉପରକୁ ଉଠି ଆସିଲେ; କିନ୍ତୁ କାହାକୁ କିଛି କହିଲେ ନାହିଁ । ଏ ମଧ୍ୟରେ ସବ୍-ଇନ୍‌ସପେକ୍ଟର ବାବୁ ବଡ଼ ହାକିମଙ୍କ ତୃଷ୍ଣା ପାଇଁ ଚା' ଆଣି ଟେବୁଲରେ ଥୋଇଲେଣି । ଚା' ଆସି ଶୀତଳ ହେଲା । ମନମୋହନ ବାବୁ କିନ୍ତୁ କେବଳ ସେହି ନଡ଼ିଆଗଛ ଆଡ଼କୁ ମୁହଁ କରି ଠିଆ ହେବାର ଦେଖାଗଲା । ଥାନାର ସାନ ଦାରୋଗା ଓ କନ୍‌ଷ୍ଟେବଲମାନେ ପିଣ୍ଡାରେ ଧାଡ଼ି ହୋଇ ଠିଆ ହୋଇଥିଲେ । ଦଶ ପନ୍ଦର ଜଣ ଚୌକିଦାର ପିଣ୍ଡାତଳେ ଚଟେ ଉଚର ଠେଙ୍ଗା ସବୁ ଧରି ଡ଼ି. ଏସ୍. ପି. ବାବୁ ଯେପରି ନିଶ୍ଚଳ ଭାବରେ ଠିଆ ହୋଇଛନ୍ତି ସେହିପରି ଠିଆହୋଇ ସେହି ନଡ଼ିଆ ଗଛ ଆଡ଼କୁ ଚାହିଁ ରହିଲେ । ବାଟରେ ଯାଉଥିବା ବାଟୋଇମାନେ ଏକଥା ଦେଖି କେହି କେହି ହୁଏତ ମନେ କରିଥିବେ ପୋଲିସବାହିନୀ ବଡ଼ ହାକିମଙ୍କର ଆଦେଶ ଅପେକ୍ଷାରେ ଠିଆ ହୋଇଛନ୍ତି । ବୁଝିପାରୁନଥିଲେ । କିନ୍ତୁ ପ୍ରକୃତରେ ସେମାନେ କାହିଁକି ଠିଆ ହୋଇଛନ୍ତି । ସମସ୍ତଙ୍କ ମନରେ ସନ୍ଦେହ ଘନୀଭୂତ ହୋଇ ଆସୁଥିଲା । ଏହିପରି ସମୟରେ ମନମୋହନ ବାବୁ ନୀରବତା ଭଙ୍ଗ କରି ଥାନାର ବଡ଼ ବାବୁଙ୍କ ଉଦ୍ଦେଶ୍ୟରେ ପଚାରିଲେ – କହି ପାରିବ ଏ ଗଛକେତେ ବର୍ଷ ହେଲା ? ସେ କହି ପାରିଲେ ନାହିଁ । ସାନବାବୁ ବି ଉତ୍ତର ଦେଇ ପାରିଲେ ନାହିଁ । କନେଷ୍ଟବଲମାନଙ୍କ ଭିତରୁ ଜଣେ ଦୁଇଜଣ କହିଲେ —ଆମେ

ଆସିବା ଆଗରୁ ତାହା ଅଛି । ଡ଼: ଏସ୍: ପି:ଙ୍କ ପ୍ରଶ୍ନର ଉତ୍ତର କେବଳ ଦେଇପାରନ୍ତେ ତଳେ ଠିଆହୋଇଥିବା ଚଉକିଆ ଦଳଙ୍କ ଭିତରୁ କେହି କେହି । କିନ୍ତୁ ତାଙ୍କର ସାହସ ନାହିଁ ? ସେମାନଙ୍କ ଭିତରୁ ଯେଉଁମାନେ ଜାଣିଥିଲେ ଉତ୍ତର ନ ଦେଇ ପରସ୍ପର ମୁହଁ ଚୂହାଁଚୂହିଁ ହୋଇ କେବଳ ଟିକିଏ ହଲଚଲ ହୋଇଗଲେ । ଏହି ହଲଚଲ ହେବାଟାକୁ ଡ଼:ଏସ୍:ପି ବାବୁ ଲକ୍ଷ୍ୟ କରିପାରିଲେ । ତହୁଁ ସେ ପଚାରିଲେ ଅଚ୍ଛା ଚଉକିଆମାନେ ! ତୁମ୍ଭମାନଙ୍କ ଭିତରୁ ଆଜିକି ସତର ବର୍ଷ ତଳେ ଏ ଥାନାରେ କିଏ କିଏ ଥିଲ ? ସାତଜଣ ଚଉକିଆ ଆଗଭର ହୋଇ ଉତ୍ତର ଦେଲେ – ହଜୁର ମୁଁ, ଆଜ୍ଞା ମୁଁ, ମୁଁ ହଜୁର, ଇତ୍ୟାଦି ଇତ୍ୟାଦି ।

## ( ଦୁଇ )

ମନମୋହନ ବାବୁ ଆସିଲେ ଥାନା ପରିଦର୍ଶନ କରିବାପାଇଁ । କାଗଜ ପତ୍ର ଟେବୁଲରେ ଥୁଆହେଲା ଥାନାର ବଡ଼ବାବୁ ଓ ସାନବାବୁ ପୁଲିସ ପୋଷାକ ପିନ୍ଧି ଯଥାରୀତି କାମରେ ଲାଗିଲେ । କିନ୍ତୁ ମନମୋହନ ବାବୁଙ୍କ ଦେହଟା କ'ଣ ହଠାତ୍ ଖରାପ ହେଲପରି ଜଣାପଡ଼ିଲା ପ୍ରକୃତରେ ତାଙ୍କ ଦେହ ଖରାପ ହୋଇ ନ ଥିଲା । ସେ ଖୁବ୍ ତାଜା ଥିଲେ । ଥାନାକୁ ଆସିଲା ପରେ ସେହି ନଡ଼ିଆ ଗଛକୁ ଚାହିଁ କିଛି ସମୟ ଠିଆହେଲା ଦିନରୁ ତାଙ୍କର ପ୍ରଫୁଲ୍ଲ ମୁଖମଣ୍ଡଳ ହଠାତ୍ ମଳିନ ପଡ଼ିଗଲା । ସେ ଆଉ ଟେବୁଲ୍ ପାଖରେ ବସି କାମ ଦେଖିଲେ ନାହିଁ । ଧୀର ଧୀର ହୋଇ ପୁଣି ସେହି ନଡ଼ିଆ ଗଛ ମୂଳକୁ ଗଲେ ନଡ଼ିଆ ଗଛର ବାହୁଙ୍ଗା ମୂଳରୁ ଶେଷ ପର୍ଯ୍ୟନ୍ତ କେତେ ପଟା ଗୁଡ଼ିଛି ତାକୁ ଗଣିଲେ । ଗଣିଲେ ସେ ମନେ ମନେ ଗଣିଲେ । ଗଣି ଦେଖିଲେ ଠିକ ସତରଟି କି ଅଠରଟି ପଟା ଗୁଡ଼ିଛି । ସେ କାହିଁକି ଗଣିଲେ, ଗଣିସାରି ଅନ୍ୟମନସ୍କ ଭାବରେ ପିଣ୍ଡା ଉପରକୁ ଉଠିଆସି ତାଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିବା ଘର ଭିତରେ ଖଟ ଉପରେ କାହିଁକି ଲମ୍ବ ହୋଇ ପଡ଼ିଗଲେ ସେ କଥା କେହି ଅନୁମାନ କରିପାରିଲେ ନାହିଁ । ଥାନାର ବାବୁମାନେ ଟେବୁଲ୍ ଉପରେ କାଗଜପତ୍ର ରଖି ଏପାଖ ସେପାଖ ଲେଉଟାଇ କେବଳ ମୁହଁକୁ ମୁହଁ ଚାହାଁଚୂହିଁ ହୋଇ ଅନେକ ସମୟ ବସି ରହିଲେ । ଦେଖୁ ଦେଖୁ ବେଳ ଆସି ପାଇବାକୁ ବସିଲା । କିଛି କାମ ହେଲା ନାହିଁ । ଡ଼: ଏସ୍: ପି: ମଧ ଖଟରୁ ଉଠି ବାହାରକୁ ଆସିଲେ ନାହିଁ । ସେତିକିବେଳେ ତାଙ୍କ ଘର ପିଣ୍ଡାକୁ ଲାଗି ଦୁଇ ଚାରି ଜଣ ବୁଢ଼ା ବୁଢ଼ା ଚୌକିଦାର ଅତି ସତର୍କରେ କଥାବାର୍ତ୍ତା ହେବାର ଶୁଣାଗଲା—ବାବୁ ଏ ଗଛ ଲଗେଇଥିଲେ । ସେ ଭିତରୁ ଜଣେ କହିଲା—ମୁଁ ଗାତ ଖୋଳିଥିଲି ? ଦ୍ଵିତୀୟ ଜଣକ ତାକୁ ଉତ୍ତର ଦେଲା—ତୁ ସିନା ଗାତ ଖୋଳୁଥିଲୁ, ମୁଁ ତ ଯାଇ ଗଛଟାକୁ କିଣି ଆଣିଥିଲି । ଅନ୍ୟଜଣକ କହିଲା—ଆମେ ସବୁ ପାଣେଣି ଦେଇଥିଲେ । ବାବୁ ଆସିବାରୁ ଆମର ସେ ସବୁ କଥା ଏବେ ମନେପଡ଼ୁଛି । ସେ ଭିତରୁ ଜଣେ ଅତି ବୁଢ଼ା ଚୌକିଦାର ଫୁସ୍ ଫାସ୍ କରି କହିଲା – ପିଲାଟାକୁ ହୋଇଥିଲା ଦୁଇ

ବର୍ଷ । କେଉଁ ସ୍ନେହରେ ପାଳିଥିଲେ କିନ୍ତୁ କ'ଣ ହେବ, ଭଗବାନଙ୍କର ଯନ୍ତ୍ରା ବରିଦ !! କୋଳଥିଆ ନାଗ ସାପ ଭିତରେ କେଉଁଠି ଲୁଚି ଗଲା, ଏକ ଚୋଟକେ ପ୍ରାଣଟା ନେଇଗଲା ! ଅନ୍ୟ ଜଣେ କହିଲା—ଆରେ, ଏଣେ ସାପ ମାରିଲା ବେଳକୁ ତେଣେ ରଙ୍ଗପୁର ଗାଁରେ କ'ଣ ହୋଇଥିଲା ଜାଣିଛୁ ତ ? ଉତ୍ତର ମିଳିଲା—ସବୁ ମନେ ଅଛି ଭାଇ ସବୁ ମନେଅଛି ସେ ଲୋକଟା ଏବେ ପାଗଳ । ଦେଖୁନୁ ବଜାରରେ ଭିକ ମାଗି ବୁଲୁଛି । ବାବୁ ଟିକିଏ ବିଚାରିଥିଲେ କ'ଣ ସେ ପାଗଳ ହୋଇଥାନ୍ତା ? ସାମାନ୍ୟ କାନର ଦୁଇଟା ନୋଳି ପାଇଁ ତା'ର କୋଳର ସନ୍ତାନକୁ ଯିଏ ମାରିଲା ସେ ହେଲା ଭଲ ଲୋକ !! ଏ ପାଗଳ ନ ହେବାକୁ ଆଉ ବାଟ କ'ଣ ଅଛି ? ଏବେ ପରା ସବୁବେଳେ ସେ ଖାଲି କହି ବୁଲୁଛି—"ଏ ବାବୁ ସତକହ, ଏ ବାବୁ ସତକହ । ତାର ପାଗଳାମିର କାରଣ କ'ଣ କିଏ ବୁଝୁଛି ? ସମସ୍ତେ ଭାବୁଛନ୍ତି ଲୋକଟା ପାଗଳ ହୋଇ ଯିବାରୁ ଏପରି କହୁଛି । କିନ୍ତୁ ଅସଲ କାରଣ ହେଉଛି, ସେ 'ସତ' ଖୋଜୁଥିଲା, 'ମିଛ' ପାଇଲା । ଯିଏ ମାରିଥିଲା ସିଏ ଏବେ ସଂସାରରେ ଭଲଲୋକ । ଯାହାର ମଲା ସେ ଏବେ ପାଗଳ ! ଏଇ ତ ସଂସାର ? ବଡ଼ ବାବୁ ନଡ଼ିଆଗଛକୁ ଚାହିଁଲାବେଳେ ମୁଁ ସେ କଥା ବୁଝିପାରୁଛି ପିଲାଟିକୁ ପୋଡ଼ିଦେଇ ଆସିଲା ପରେ ଏହି ଗଛଟିକୁ ସେ ପୋତିଥିଲେ । ଗଛ ଏବେ ସତରଟି ବାହୁଙ୍ଗା ଛଡ଼େଇଛି, ଠିକ୍ ବର୍ଷକୁ ଗୋଟିଏ ଲେଖାଏଁ । ଚଅଁର ପଡ଼ିଛି, ଗୋଟମା ଧରିଛି । ବାବୁ କ'ଣ ବୁଝିପାରୁ ନ ଥିବେ ? ସେ ଥିଲେ ଏ ବର୍ଷକୁ ଉଣିଶି ବର୍ଷ ହୋଇଥାନ୍ତା । ସେଥିରେ ମଧ୍ୟ ଚଅଁର ପଡ଼ି ଗୋଟମା ଧରିଥାନ୍ତା । ବି: ଏ: କି ଏମ୍: ଏ: ପଢ଼ି ଏହି ବାବୁଙ୍କ ପରି ବାବୁ ହେବାକୁ ଯାଇଥାନ୍ତା । ଏହି କଥା ମନେପକାଇ ବୋଧହୁଏ ବାବୁ ଶୋଇ ପଡ଼ିଛନ୍ତି ।

ମନମୋହନ ବାବୁ ଆଖି ବୁଜି ଖଟରେ ପଡ଼ିଥିଲେ ସତ; କିନ୍ତୁ ତାଙ୍କ ଆଖିକି ନିଦ ନଥିଲା । ସେହି ସତର ବର୍ଷ ତଳର କଥା ସେ ଭାବୁଥିଲେ— ଠିକ୍ ଏହିପରି ଏକ ଶୀତଦିନ ସକାଳେ ଗାଙ୍ଗପୁର ଥାନାର ରଙ୍ଗପୁର ଗାଁରେ ଏକ ହତ୍ୟାକାଣ୍ଡ ଘଟିଲା । ମନମୋହନ ବାବୁ ଥିଲେ ପୁଲିସ୍ ସବ୍‌ଇନସ୍‌ପେକ୍ଟର । କାହାର ଗୋଟିଏ ଦୁଇବର୍ଷ ପିଲାର କାନର ଦୁଇଟି ନୋଳି ପାଇଁ ଜଣେ କିଏ ତାର ତୋଟି ଚିପି କିଆବୁଦାରେ ପକାଇ ଦେଇଥିଲା । ଶବ ମିଳିଲା, ନୋଳି ବି ମିଳିଲା । କିନ୍ତୁ ଆସାମୀ ତ ମିଳିଲା ନାହିଁ । ଯାହାକୁ ଆସାମୀ ବୋଲି ଧରା ହୋଇ ଅଣା ଗଲା ସେ ଦିନେ କାଳ ହାଜତ ଭିତରେ ରହିଲା । ଦିନକ ପରେ ପ୍ରମାଣ ଅଭାବରେ ତାକୁ ଖଲାସ କରି ଦିଆଗଲା । ଏ ଘଟଣାର ମାସକ ପରେ ଦେଖାଗଲା ଯେ ଅଭିଯୋଗରେ ଧରା ହୋଇ ଆସିଥିବା ବ୍ୟକ୍ତି ତାର ଜମି ପାଞ୍ଚମାଣ ଭିତରୁ ଦୁଇମାଣ ଜମି ବିକି ଜମିଦାରଙ୍କ ଦିଆରେ କାଗଜରେ ଟିପ ମଡ଼ାଇ ଆଣିଥିବା ଟଙ୍କା ପରିଶୋଧ କରି କାଗଜଟିକୁ

ଫେରାଇ ଆଣିଲା । ସେହି କାଗଜରେ ଯେଉଁ ଦିନର ତାରିଖ ଦିଆଥିଲା ତାହା ହେଉଛି ତା ନାଁରେ ହତ୍ୟା ଅଭିଯୋଗ ହେବାର ଦୁ' ଦିନ ପରର ତାରିଖ । ସେ ଅଭିଯୋଗରୁ ମୁକ୍ତ ହେଲା ପରେ ପରେ ରଙ୍ଗପୁରର ପୁତ୍ରହୀନ ପିତା ପାଗଳ ହୋଇଗଲା । ତାହା ଆଜିକୁ ସତର ବର୍ଷ ତଳର କଥା ।

ମନମୋହନ ବାବୁ ସେଦିନ ସତର ବର୍ଷ ପରେ ରାଙ୍ଗପୁର ଥାନାକୁ ଡ଼ି. ଏସ୍. ପି. ଭାବରେ ଆସିଥିଲେ । ଗଲାବେଳେ ମଧ୍ୟ ଡ଼ି. ଏସ. ପି. ଭାବରେ ଗଲେ; କିନ୍ତୁ ଆସିବା ଓ ଯିବା ମଧ୍ୟରେ ଯେଉଁ ସମସ୍ତ ବ୍ୟବଧାନ ରହିଲା ତାହାର ଭିତରେ ସେ ପୁତ୍ରହୀନ ପିତା ଦଶ ସତର ବର୍ଷ ତଳେ ପୋତି ଯାଇଥିବା ନଡ଼ିଆ ଗଛଟିକୁ ଚାହିଁ ରହିଥିଲେ ଏବଂ ବିଦାୟ ନେଲା ବେଳେ ସେହି ଗଛ ପାଖରୁ ମଧ୍ୟ ବିଦାୟ ନେଲେ ।



# ବିଟ୍‌ଘର ଓ ରେଳଗାଡ଼ି

କାଳନ୍ଦୀ ଚରଣ ପାଣିଗ୍ରାହୀ

---

ଶହଶହ ମାଇଲ ଧରି ଦୁଇଟା କଳା' ଲମ୍ବା ଧାରଣା କେଉଁ ଠାରୁ ଆରମ୍ଭ ହୋଇ ଶେଷ ହୋଇଛି କେଉଁଠାରେ ? ପାଉଁଶ ବୋଲା ବୈରାଗୀ ପରି ଖଣ୍ଡେ ଧୂଳିଆ କଚ୍ଚା ସଡ଼କ ଏହି ଲମ୍ବା ଧାରଣାକୁ ଡେଇଁ ନମ୍ର ହୋଇ ଭାବରେ ପଡ଼ି ରହିଛି । ସେହି ଛକ ଜାଗାରେ ରେଲରାସ୍ତାର ଦୁଇକଡ଼ରେ ଦୁଇଟା ଫାଟକ ସଦାବେଳେ ବନ୍ଦ ଥାଏ ।

ବଳଦ ଗାଡ଼ି ସବୁ ଧୀରେ ଧୀରେ ଆସି ଫାଟକ ପାଖରେ ଠିଆ ହୁଏ । ଗାଡ଼ିବାଲାମାନେ ଡାକ ଛାଡ଼ନ୍ତି, "ଗଡେଇ ଭାଇ, ଫାଟକ ଫିଟା ।" ଫାଟକ ଠାରୁ ଦଶହାତ ଦୂରରେ ଛ' ହାତ ଲମ୍ବ ଛ' ହାତ ଓସାରର ବିଟ୍ ଘରଟି । ଗାଡ଼ି ସମସ୍ତ ଛାଡ଼ି ବାକି ସମସ୍ତରୁ ଚଉଦପଣ ପନ୍ଦରବାଲା ଗଡେଇ ମାଝି ସେହି ଘର ଭିତରେ ଥାଏ କିନ୍ତୁ ଗୋଟାଏ ଡାକରେ ତା'ଠାରୁ ଉତ୍ତର ମିଳେ ନାହିଁ ।

"ମାଝି ବାବୁ" "ଚୌକିଦାର ବାବୁ" ଦୁଇ ଡଜନ ଡାକ ପରେ ବିଟ୍‌ଘରୁ ଭୁଣ୍ଡ ଶୁଣାଯାଏ – "କିଏ" ?

"ଆମ ଘର ଉଗ୍ରରଣ ।"

"ନାହିଁ, ନାହିଁ, ଗାଡ଼ି ଆସୁଛି ।"

ଗାଡ଼ି ହୁଏତ ଛ ଘଣ୍ଟା ପରେ ଆସିବ କିମ୍ବା କାଲି ସକାଳେ । ଦ'ପହର ଖରାରେ ଶଗଡ଼ିଆର ତାଳୁ ଶୁଖିଯାଏ । ଗୋରୁ ଗୁଡାକ ଧକେଇଲେଣି; ନ ହେଲେ ଅଧରାତି ଶୀତରେ ଭୂମ ଫୁଲଇ ଠିଆ ହୋଇଛନ୍ତି; ଶଗଡ଼ିଆର ଦାନ୍ତକୁ ଦାନ୍ତ ବାଜୁଛି । ଛାଡ଼—"ନେ, ଗଡେଇ ଭାଇ, ପାନଖିଆ ନେ— ଟିକିଏ ଖୋଲି ଦେ ଭଲା ।"

"ଗାଡ଼ି ଆସୁଛି, କହୁଚ, ଆଜ୍ଞା ଜଗର ।"

"କଣ କରିବା ଭାଇ, ବୋମ୍ବେଇ ଶଗଡ – ପାଞ୍ଚ କୋଶରୁ—" ଫାଟକ ଆର ପାଖରୁ ଗଦେଇ ହାତ ବଢ଼ାଏ— "ଦଅ, କ'ଣ ଦଉଚ ଆଣ।" ଅଧଲାଏ ପାଖଲାଏ— ନ ହି ନାହିଁ —ଦ' ପଇସା।

ଫାଟକ ଖୋଲିଯାଇ ସୁଧ ପାଞ୍ଚଟା ଶଗଡ କେଁ କଟର ଶବ୍ଦକରି ସିଡ଼ ପାର ହୋଇଯାଏ । ପୁଣି ସବୁଆଡେ ଶୁନ୍ ଶାନ୍ । ଏହ୍ମ କାମରେ ଗଦେଇ ମୁଣ୍ଡ ଚନ୍ଦା ହୋଇଗଲାଣି । ଆଖ ପାଖ ପଚାଶ ଖଣ୍ଡ ଗାଁରେ ତାକୁ ନ ଚହ୍ନି କେହ୍ମ ନାହିଁ ।

ଏକୁଟିଆ ବଟ୍ ଘରଟି—ପଛଆଡ଼େ ଟାଙ୍ଗରଭୂଇଁ— ଠାଏ ଠାଏ ଗୋଟାଏ ଗ୍ରେଟ ମୁଣ୍ଡିଆ ପୃଥିବୀର କଙ୍କାଳ ପରି ବାହାରି ପଡ଼ିଚ । ବଡ଼୍ଡ଼ ତଳେ ଗୋଟାଏ ପାହାଡ଼ର ପାଚେରି ଦୂରରୁ ପାଉଁଶିଆ ଦିଶେ । ରେଳ ଧାରଣା ଯେଉଁ ଆଗକୁ ଗଲେ ବିଲ୍ ପରେ ବିଲ୍— କେବଳ ବିଲ୍ ।

ମଙ୍ଗୁଳି ସ୍ୱାଇଁ ବଲ ମଝିରେ ହଳ ଠିଆ କରି କଳେ ଚଲମ ଟାଣି ଦେବାକୁ ଗଦେଇ ପାଖକୁ ଆସେ । ରେଲବାଇ କାମ । ଚଲମ ସଜାଡ଼ି ନ ରଖିଲେ ଗଦେଇ ଦିନସାର କଟିବ କେମିତି ? ଗଣ୍ଡେଇ ମଜ୍ଝି ମଜ୍ଝି ଗାଁ ଗଣ୍ଡା କେତେ କଥା ପଡେ ।

"ଗଦେଇ ଭାଇ, ଗାନ୍ଧି ଅମଳରେ ସବୁ ଶସ୍ତା ହେଲା, ଗଣ୍ଡେଇ ଖାଉ ତ କାହିଁ ଖସିଲା ନାହିଁ ।"

"ଆରେ ଗାନ୍ଧି ଫାନ୍ଧି କଏ କୁଆଡେ ଗଲେଣି ମ । ଶସ୍ତା ମହରଗ ଗାନ୍ଧି ହାତରେ ଅଛି, ନା ସରକାର ହାତରେ ଅଛି ?"

ମଙ୍ଗୁଳି ଗୋଟାଏ ଲମ୍ବା ସୁଅକରି ଚଲମରୁ ଧୂଆଁ ଶୋଷିନିଏ । ତାହାର ଆଖି ଦୁଇଟା ମୁଦି ହୋଇଯାଏ, ଗଳାର ଶିରଗୁଡ଼ିକ ଟାଣି ହୋଇ ଚମଡା ତଳୁ ବାହାରି ପଡେ । ଚଲମକୁ ଗଦେଇ ହାତକୁ ବଢ଼ାଇ ଦେଇ ନାକ ଏବଂ ପାଟିବାଟେ ଫସ ଫସ କରି ଧୂଆଁ କାଢ଼ି କାଢ଼ି କହେ, "ସରକାର କ'ଣ ସଜରେ ଅଛି ଯେ, ଗାନ୍ଧି ତାକୁ ଟଳଦେବ । ଏଇ ଆଗ ଗୋଟାଏ କଥା ଦେଖିଲ, ଏ ଯେଉଁ ରେଲବାଇ ଚଳେଇଛ— ହେଃ ।" ଅବଶ୍ୟ ସେତେବେଳେ ଘୋର ଇଂରେଜ ଅମଳ—

ଜହ୍ନା ଆସି ମଝିରେ କହେ, "ବାପା ତୋତ୍ତ୍ୱଣି ପିଇବୁ ପରା ।" ଗଦେଇ ମାଝିର ସଂସାରରେ ଜହ୍ନା ଛଡା ଆଉ କେହ୍ମ ନାହିଁ । ଯାହା କହନ୍ତି, ଏକରୁ ଦୁଇ ନାହିଁ, ଛୁଡ଼ିଗଲେ ଗଉଁଠେଇବାକୁ ନାହିଁ । ଚଲମ ପଛକୁ ଗଦେଇ ଯଦି ଆଉ କାହାକୁ ବେଶି ଭଲ ପାଏତ ସେ ଜହ୍ନା । ଜହ୍ନା କାହାକୁ ଭଲପାଏ କେଜାଣି; କିନ୍ତୁ ଗଦେଇ ଆଗରେ ଖାଲି ତାହାର ନିଜ ମାଆର ଉଲୁଟା ଦିଏ । ମାଆକୁ ଏତେ ଭଲ ପାଇବାର କାରଣ

ସେ ତା'କୁ କେବେ ହେଲେ ଦେଖି ନାହିଁ । ଗଦେଇ ହସେ, "ଇଲୋ, ତୋର ପୁଣି ମାଆ କିଏ ? ସେ ତ ତୋ ଜନମ ଆଗରୁ ମରିଛି ।"

ସେଦିନ ସକାଳେ ବାସିଆଡ଼ନ୍ତି ସାରି ଜହ୍ନ ବାପାକୁ ଉଠାଇବାକୁ ଗଲାବେଳକୁ ଗଦେଇ ବୁଢ଼ା ଦୌଡ଼ ପାଡ଼ ହୋଇ ହୁ ହୁ କମ୍ପୁଛି । ଜହ୍ନ ହାତ ଦେଇ ଦେଖିଲା, ଦିହରେ ତାହାର ଖଇ ଫୁଟୁଛି । ଜୀବନର ଅଠର ବର୍ଷ ଭିତରେ ଜହ୍ନର ହେଲାରୁ ହେବାଠାରୁ ସେ ଦିନେ ହେଲେ ବାପାଙ୍କୁ ଏମିତି ଦେଖି ନାହିଁ । କେତେବେଳେ କେମିତି ଦିହ ମୁଣ୍ଡ ଟିକିଏ ଦୁଏ । ସେଥିରେ ଗଦେଇର କାମ ବନ୍ଦ ହୋଇ ନାହିଁ ।

ଜହ୍ନ ବସ୍ତିଗୁଡ଼ିକୁ ନିଆକରି ଫାଟକ ବନ୍ଦ କରିବା, ଫିଟାଇବା ଓ ଗାଡ଼ି ଆସିଲା ବେଳେ ନେଲି ପତାକା ଧରି ଠିଆ ହେବାକୁ ପଡ଼ିଲା । ଆଗେ ସେ ନୂଆ ବୋହୂଟି ପରି ଗାଡ଼ିକୁ ଲୁଚି କରି ରହୁଥିଲା । ଅଧେ ଦିହ ଘର ଭିତରେ ଓ ଅଧେ ପଦାକୁ କାଢ଼ି କବାଟ ଧରି ଚାହିଁ ରହେ । ଆଜିକାଲେ ଗଦେଇ ଯେତେବେଳେ ନିଆଁ ଡୁଲାଟାଏ ଧରି ଗାଡ଼ି ପାଖରେ ଠିଆ ହୁଏ, ସେତେବେଳେ ତାଙ୍କୁ ଜଗମ ନଦ । ଏଇଲାଗି ଜହ୍ନକୁ ଦିନରାତି ଗାଡ଼ି ଜଗିବାକୁ ପଡ଼ିଲା । ତାହା ଉପରେ ଗଦେଇ ବୁଢ଼ାର ଘଣ୍ଟା ଘଣ୍ଟାକେ ଡାକରା । ସବୁବେଳେ ଅଣ୍ଟି ଉଠୁଛି । ଚୂଡ଼ାଭଜା କ ତୋରାଣି କିଛି ହେଲେ ମୁହଁରେ ଦେଉ ନାହିଁ ।

ବେଳ ରଡରଡ ହୋଇ ଆସୁଛି । ଅଘିଣ ମାସ ଆକାଶଟା ଖରି ସଫା । ଦୂର ପାହାଡ଼ଗୁଡ଼ିକୁ କିଏ ଯେମିତି ଧୋଇ ଧୋଇ ଖଣ୍ଡେ ଓଦା କନାରେ ପୋଛି ସଜେଇ ରଖିଦେଇଛି । ତାହାର ଉପରୁ ଫାଲେ ସୂର୍ଯ୍ୟ ଦେଖାଯାଉଛି ଏବଂ ବାସିଧୋବ ଲୁଗା ପରି ଖଣ୍ଡେ ଧଳା ବଉଦ ତାହାର ସୁନା ଜରିର ଧଡ଼ିଟାକୁ ସୂର୍ଯ୍ୟ ଆଗରେ ଧରିଛି । ଜହ୍ନ ସିଆଡ଼େ ଟିକିଏ ଆଖି ପକେଇ ଦେଇ ଗାଡ଼ି ଆସିବାକୁ ଚାହିଁ ରହିଲା । ଦିହରେ ଖଣ୍ଡେ ହଳଦିଆ କନ୍ଥା । ସେ ଜରିଧଡ଼ିଆ ମେଘର ଛାଇ ତାହାର ଲୁଗା ଉପରେ ପଡ଼ିଚି ।

ବହୁତ ଦୂରରୁ ଗାଡ଼ିର ଶବ୍ଦ ଶୁଣାଗଲା । ଜଙ୍ଗଲଭିତରୁ ଗାଡ଼ିର ଧୂଆଁ କୁଣ୍ଡଳୀ ହୋଇ ଫୁଲହାର ପରି ଆକାଶ ତଳେ ଝୁଲି ପଡ଼ିଚି—ଶେଷକୁ ଲାଇନ୍ ଉପରେ କଟକଟ ହୋଇ ଉଠିଲା । ଗାଡ଼ି ଘୁଞ୍ଚିଯିବା ବେଳକୁ କ'ଣ ଗୋଟାଏ ଖଟ୍‌କରି ତା ଗୋଡ଼ ପାଖରେ ପଡ଼ିଲା । ଜହ୍ନ ଦେଖିଲା ଗୋଟାଏ କାଗଜ ପୁଡ଼ା । ସେତେବେଳକୁ ଗାଡ଼ିର ପଛପାଖଟା ଗ୍ଲେଟ ହୋଇ ଧୀରେ ଧୀରେ ଦୂରଗଛ ଉହାଡ଼ରେ ମିଶି ଯାଉଚି ।

ପୁଡ଼ାଟାକୁ ଧରି ଖୁସି ଓ କୌତୁକରେ ବାପ ଆଗରେ ଯାଇଁ ଫିଟାଇ ଦେଖେ ତ ଦୁଇଟା ସୁରଙ୍ଗୀ କମଳା । ଚରୁଡ଼ାଏ କଲରେ ଜାକି ଦେଇ ଗଦେଇ କହିଲା, "ଏ ତ ଖାଲି ଅମୃତ ଲୋ ଝିଅ ।" ସେ ଅବଶ୍ୟ ଅମୃତ କେବେ ଚାଖିନାହିଁ ।

ଗଦେଇ ଭାବଲା, ତାହାର ଅରୁଚ ଛଡ଼େଇବା ପାଇଁ ଏତକ ତାକୁ ଦଅଁ ଦେଲେ ଜଣ୍ଣୁ ଭାବଲା, କାହା ହାତରୁ କେମିତ ଖସି ପଡ଼ିଥିବ; କନ୍ତୁ ରୋଜ ଯେତେବେଳେ ନୂଆ ନୂଆ ଫଳମାନ ମିଳଲ୍, ସେତେବେଳେ ଗଦେଇର ଭୟ ହେଲା । ସେ ଜହ୍ନକୁ ମନା କରଦେଲା, କଥାଟାକୁ ବାହାର ନ କରବା ପାଇଁ । ଏକୁଟିଆ ବଟ୍ ଘର ପାଖେ ଜହ୍ନର ଅବା କେତେ ଲୋକଙ୍କ ସାଥିରେ ଭେଟ ହୁଏ ଯେ କଥା ପଧାକୁ ବାହାରନ୍ତା !

ଜହ୍ନର କନ୍ତୁ ମନ ଭିତରେ ଗୋଟାଏ ଜାଗା ମମତାରେ ତରଳ ଯାଇ ଢ଼ଳ ଢ଼ଳ ହୋଇ ଉଠିଛି । ସେ ମମତା ଜଣେ କେହି ପୁରୁଷ ପାଇଁ ନୁହେଁ, କ ନାରୀ ପାଇଁ ନୁହେଁ—ଗୋଟାସୁଦ୍ଧା ପାସେଞ୍ଜର ଗାଡ଼ିଟି ପାଇଁ । ତାହାର ଇଞ୍ଜିନ୍, ତାହାର ଧୂଆଁ, ତାହାର କଳା ମସିଆ ଡ୍ରାଇଭର, ଟେରା ଆଖିଆ ଗାର୍ଡ଼, ପାଞ୍ଚଶହ ଆରୋହୀଙ୍କୁ ଘେନ ସମସ୍ତ ପାସେଞ୍ଜର ଗାଡ଼ିଟାକୁ ଜହ୍ନ ଆଜ ପ୍ରାଣ ଦେଇ ଭଲପାଇ ବସିଚ । ତାହାର ଥିର ଥିର ଗ୍ଭଲ, ବଙ୍କା ଟଙ୍କା ଭଙ୍ଗୀ ଜହ୍ନ ପାଖରେ ଗୋଟିଏ ଶ୍ରେଷ୍ଠ ପିଲାପର ପ୍ରେମର ପାତ୍ର । ଡାକ ଗାଡ଼ି, ମାଲ୍‌ଗାଡ଼ି ପ୍ରଭୃତି ସବୁଦନ ପର ଯାଆଆସ କରେ; କନ୍ତୁ କଲକତାରୁ ଯେଉଁ ପାସେଞ୍ଜର ଆସେ, ପାଞ୍ଚ ମାଇଲ ଦୂରରୁ ତାହାର ଶବ୍ଦ ଶୁଣିଲେ ଜହ୍ନର ଛାତି ଥର ଉଠେ । ଇଞ୍ଜିନରୁ ଆରମ୍ଭ କର ଗାଡ଼ିଘର ପର୍ଯ୍ୟନ୍ତ ସବୁ ଡବାଗୁଡ଼ାକ ତାହାର ନଜର ଉପରେ ଗୋଟି ଗୋଟି ହୋଇ ଡେଇଁଯାଏ । ଗାଡ଼ିର ଝରକା ଭିତରୁ କେତେକ କଳା କଳା ମୁଣ୍ଡ ଆଖି ପିଛୁଡ଼ାରେ ଉଭେଇ ଯାଏ । ଗାଡ଼ି ଦୁଆର ଖୋଲି କଏ ଜଣେ ତାହା ଆଗରେ ଝଣ୍ଡେ ଛୁଟକନା ଉଡ଼ାଇ ଦଏ—ଜହ୍ନ ଦେଖେ, କଳା ଟୋପଲ ଲଗା ଟୋକାଟିଏ ତାକୁ ଗ୍ଭହିଁ ହସୁଚ । ଜହ୍ନ ମଧ୍ୟ ହସିଦଏ ଏବଂ ବଗ୍ଭରେ ଏହି ଟୋକା ତାକୁ ଫଳ ଦେଉଛି ପର । ଆଖି ପିଛୁଳାକେ ଗୋଟାଏ ହସ ରେଳଡ଼ବା ସଙ୍ଗେ ଉଭେଇଯାଏ । ଆଉ ଗୋଟିଏ ହସ ଅଟକ ଯାଏ ବଟ୍‌ଘର ସାମନାରେ । ଜହ୍ନ କନ୍ତୁ ଭଲପାଏ ଗୋଟାସୁଦ୍ଧା ପାସେଞ୍ଜର ଗାଡ଼ିଟିକୁ, ଯାହାର ଇଞ୍ଜିନ, ତାହାର ଧୂଆଁ, ତାହାର କଳା ମସିଆ ଡ୍ରାଇଭର, ଟେରାଆଖିଆ ଗାର୍ଡ଼ ଓ ପାଞ୍ଚଶହ ଆରୋହୀ !

ରେଲ୍ ସଡ଼କ କରରେ ଗୋଟିଏ ସରୁ ଚଲାବାଟ । ତାହାର ଉପରେ ଅଧେ ଅଧେ ଲୋକ ଯା ଆସ କରନ୍ତି । ଦଓଟି ଗୋଟିଏ ମାଇପେ ମାଣିଆବନ୍ଧ ଲୁଗା ପିନ୍ଧି, କାହା କାଖରେ ପିଲାଟିଏ, କଏ ହଳଦୀ ମଥାଘଷା ବୋଲ ହୋଇ ଜଣେ ବଡ଼ୁଆଜକା ଯାଉଁଲପକା ମରଦ ପଛରେ ଗ୍ଭଲଛି । ଖରାବେଳେ କଏ କେମିତ ଆସି ବଟ୍ ଘରପାଖ କନିଅର ଗଛମୂଳେ ବସି ପଡ଼ନ୍ତି । ମାଇପିଟିଏ ଦେଖିଲେ ଜହ୍ନ ଯାଇ ତାହାର ବାପଘର, ଶାଶୁଘର କଥା ପଗ୍ଭରେ ।

ମଝିରେ ମଝିରେ ଲଇନ୍‌ବାବୁ ଗ୍ଭରଚକିଆ ଟ୍ରଲି ଗାଡ଼ି ଝଣ୍ଡିରେ ଚଢ଼ି ନାଲି ପତାକା ଉଡ଼ାଇ ବଟ୍‌ଘର ଆଗରେ ଗ୍ଭଲଯାଏ । ଗଦେଇ ବେମାର ଥିବାରୁ କୁକୁଡ଼ା

ବରଦ କରି ପାରେ ନାହିଁ । ଲାଇନ୍ ବାବୁଙ୍କ ପୋଷାକ ଓ ଗୃଲରେ ସାହେବିଆନା ଥିଲେ ହେଁ ଦେହର ରଙ୍ଗରେ ନାହିଁ । ସାହେବ ହେବାର କ୍ଷୀଣସ୍ପୃହା ପରି ତାଙ୍କ ଓଠ ଯୋଡ଼ିକ ଖଲି ଫୁଲଛଇରେ ଧଳା ହୋଇପଡ଼ିଛି । ଦୂରରୁ ନାଲିପତାକା ଦେଖି ଗଦେଇ କହେ, ଯା ମଙ୍ଗୁଳି, ହଳପାଖକୁ, ଚଣ୍ଡୀଗୃମୁଣ୍ଡା ଆସିଲେଣି, କୁକୁଡ଼ା ବନ୍ଦ ମ ଗିବେ । ଆଗେ ଅ ଗେ ଲାଇନ୍ ବାବୁଙ୍କୁ ଦେଖି ଜହ୍ନକୁ ଅନ୍ଧାର ସ୍ୱଢପରି ଡର ମାଡ଼ୁଥିଲା ।

ଆଜିକାଲି ତାକୁ ଡ଼ର ଭୟ ନାହିଁ । ପାସେଞ୍ଜର ଗାଡ଼ି ତାକୁ କମଳା ଲେମ୍ବୁ ସଙ୍ଗେ ସଙ୍ଗେ ଅଭ୍ୟସ୍ତ ମଧ୍ୟ ଦେଇଛି ।

× × × ×

ସେତେବେଳର ବି: ଏନ୍: ଆର୍: ର ପାସେଞ୍ଜର ହଡ଼ାବଳଦ ପରି ଥଙ୍ଗେଇ ଥଙ୍ଗେଇ ଗୃଲେ । ପାଞ୍ଚ ମାଇଲରେ ; ଟିକିଏ ବିଶ୍ରାମ ନିଏ । ସବୁ ଷ୍ଟେସନରେ କାନ୍ଧରେ ଫଳଟୁଙ୍ଗିଟା ଥୋଇ ଏବଂ ହାତରେ ସୋଡ଼ା ବୋତଲ ଧରି 'ଗୃ-ଗ୍ରମ' 'ବିଡ଼ି ସିଗାରେଟ୍' 'ଆରେ ନାଥିଆ' 'ହେ କୁଲି' ଭିତରେ ଦାମ ବଚରିକୁ ଗାଡ଼ିଟାର ଏମୁଣ୍ଡରୁ ସେମୁଣ୍ଡଯାଏ ଥରେ ଡ଼ାକି ଯିବାକୁ ହୁଏ—ସୋଡ଼ା,—କେଲା,—ପିଆରି ।

ଦିନେ ଛଡ଼ା ପୁରୀ—କଲିକତା । ବେଶ୍ ଚଳନ୍ତି ଜୀବନ । ଦାମକୁ ବୋଧହୁଏ—ଜଗତ୍ ଗୋଟାକ ସ୍ଥିର ରହିଚି, ସେଇ କେବଳ ସ୍ୱେଜନା ଦଉଡ଼ୁଚି । ଏହି ଦୌଡ଼ିବା ଭିତରେ ହଠାତ୍ ଦିନେ ଟାଙ୍ଗର ଭୂଇଁରେ ଚମ୍ପା କଢ଼ ପରି ଜହ୍ନର ମୁହଁ ତାହାର ଆଖି ଆଗରେ ପଡ଼ିଲା । ଷ୍ଟଲ ମାଲିକଙ୍କୁ ଲୁଗ୍ରଇ ନିତି ଏହି ରୂପର ଦାନ ଦେବାକୁ ସେ ଭୁଲିଲା ନାହିଁ । ପ୍ରତି ଦିନ ସେଇ ହସ ଟିକିଏ ଦେଖିବାକୁ ସେ ନିମକ୍‌ହରାମ୍ ହେବାକୁ ଡ଼ରିଲା ନାହିଁ । ଉଃ ! କେତେ କମଳା ଅଙ୍ଗୁର ତ ସଡ଼ିଯାଉଚି, କେତେ ଖରି ଶୀତରେ ଦିହଟାକୁ ପୁଆଇ ସେ କାମ କରୁଛି—କିଏ ତାହାର ଅଛି, କାହାକୁ ସେ କଣ ଦିଏ—ଏହିଟିଅଟିକୁ ଅବା ଦି'ଟା ପୁଞ୍ଜାଏ ଫଳ ଦେଲା !

ଆଜି ଦରମାଟି ପାଇ କଲିକତାରୁ ସେ କେତେଟା ଭଲ ଚଜ କିଣି ଆଣିଚି । ମିଠେଇ ଓ ଫଳ ସାଥିରେ ଖଣ୍ଡେ ଶାଢ଼ୀ ମଧ୍ୟ—ସବୁ ଗୋଟିଏ ବଡ଼ ପୁଡ଼ିଆରେ ଭଲ ରୂପେ ବନ୍ଧା । ଟିଅଟି ଏହି ଜିନିଷତକ ଦେଖି ଭାରି ଖୁସି ହେବ । ଦାମ ରେଲ ଦରଜା ଖୋଲି ପୁଡ଼ିଆଟି ଧରି ଠିଆ ହୋଇଚି । ମନେ ମନେ ଭାବୁଚି, ଏମିତି ଖାଲି ପୁରୀ କଲିକତା ହୋଇ କଣ ତା'ର ଦିହକ ଯିବ । ତାହାର ବେଶି କିଛି ଲୋଡ଼ା ନାହିଁ ।

ଏହିଭଳି ଖଣ୍ଡିଏ ଷ୍ଟେସନ ଘର ଓ ଜହ୍ନ ପରି ଗୋଟିଏ ସୁନ୍ଦର ଝିଅ । ବାଃ ! ଏପରି ଭୁତଡଉଡ଼ାଠାରୁ ସେଥିରେ କେତେ ସୁଖ ।

ଦିନ ରାତି ଚବିଶ ଘଣ୍ଟା ଭିତରେ ସେ ସ୍ୱରଶବ୍ଦ କୋଣ ବାଟ ଯାଆସ କରେ । ପ୍ରତି ଷ୍ଟେସନରେ ଗାଡ଼ି ଠିଆ ହୁଏ । ପ୍ରତି ଷ୍ଟେସନରେ କେତେ ଲୋକ ଓହ୍ଲାଇଯାନ୍ତି, ଉଠନ୍ତି । କେତେ ସୁନ୍ଦର ମୁହଁ ଓଢ଼ଣା ତଳେ ଲୁଚି ରହେ । ଲକ୍ଷ୍ମୀ ପରି ଧଳା ଧଳା କଅଁଳ ପାଦ ଉପରେ ଝଲମଲ ଶାଢ଼ୀର ଧଡ଼ି ଝୁଲୁଥାଏ । ଦାମ ସେ ସବୁକୁ ଚାହିଁ ନ ଚାହିଁଲା ପରି ଗାଡ଼ିର ଏ ପାଖରୁ ସେପାଖ ଯାଏ ଖାଲି ଡାକୁଥାଏ—ସୋଡ଼ା—ଲେମ—ପି—ଆ—ର ।

ଗାଡ଼ି ଚାଲିବା ବେଳେ ବାଟରେ ଘାଟରେ ଗାଧୁଆ ତୁଠରେ କେତେ ସୁନ୍ଦର ମୁହଁ ନଜର ଦାମ ଆଖିରେ ପଡ଼େ; କିନ୍ତୁ ମନେହୁଏ, ସବୁ ସୁନ୍ଦର ମୁହଁ ଯେମିତି ଜହ୍ନ-ଠାରେ ଠୁଳ ହୋଇଛି । କେତେ ପାହାଡ଼ ଜଙ୍ଗଲ କାଟି ଗାଡ଼ି ଚାଲିଛି । ସବୁ ଜାଗା ଗୁଡ଼ାକ ସାଥିରେ ଦାମର ଭଲ ଚିହ୍ନା ପରିଚୟ । ଆଜି ସେ ସବୁକୁ ଦେଖି ମଧ୍ୟ ସେ ଦେଖୁ ନାହିଁ । ନେଳି ପତାକାଟି ଧରି ଜହ୍ନ ଠିଆ ହୋଇଥିବାର ବହୁତ ଦୂରରୁ ତା ଆଖି ଆଗରେ ପଡ଼ିଲା ।

ଦୂର ପାହାଡ଼ ତଳେ ସୂର୍ଯ୍ୟ ଅସ୍ତ ହୋଇଛି; କିନ୍ତୁ ପିଚକାରୀ ମାରିଲାପରି ପଶ୍ଚିମ ଆକାଶଟାକୁ ଲାଲ କରି ଦେଇଛି । ତାହାର ଆଗରେ ଖଣ୍ଡେ ହଳଦିଆ କପ୍ତା ପିନ୍ଧି ଓ ନେଳି ପତାକାଟି ଧରି ଜହ୍ନ ଗୋଟିଏ ଛବିପରି ଠିଆ ହୋଇ ହସୁଛି । ଦାମ ସେହି ହସକୁ ଲୋଲୁପ ଆଖିରେ କେତେ ବେଳଯାଏ ଚାହିଁ ରହିଥିଲା, ତାହା ସେ ଜାଣେ ନାହିଁ, କିନ୍ତୁ ଗାଡ଼ିଟା ବଟ୍‌ଘର ଡେଇଁଯିବା ପରେ ହଠାତ୍ ତାହାର ଖିଆଲ ହେଲା, ଝୁଲିପଡ଼ି ସେ ଜହ୍ନ ଆଡ଼କୁ ଚାହିଁଲା; କିନ୍ତୁ ଗୋଡ଼ ଦୁଇଟାକୁ ଗାଡ଼ି ଉପରେ ସିଧା କରି ରଖି ପାରିଲା ନାହିଁ··· ।

ଗାଡ଼ି ଖଣ୍ଡେ ଦୂରଯାଇ ଠିଆ ହୋଇଗଲା । ଗାର୍ଡ ସାହେବ ଏବଂ ଗାଡ଼ି ଭିତରୁ ଆଉ କେତେ ଲୋକ ଓହ୍ଲାଇ ପଡ଼ି ଦୌଡ଼ା ଦୌଡ଼ି କଲେ । ଜହ୍ନ ବିଗୁରା କିଛି ବୁଝି ପାରିଲା ନାହିଁ । ଗାଡ଼ିଟାକୁ ଏହି ପହିଲି ଥର ବଟ୍‌ଘର ପାଖେ ଠିଆ ହେବାର ଦେଖି ତାହାର ଚକ କେମିତି, ଦରଜା କେଉଁଠି ଓ ଝରକା କେତେଟା, ଗଣିବାକୁ ଲାଗିଲା ।

କିନ୍ତୁ ବଟ୍‌ଘରର ଅଳ୍ପ ଦୂରରେ ଲୋକେ ଯେତେବେଳେ ଜମା ହୋଇଗଲେ, ଜହ୍ନର ଆଖି ସେହି ଆଡ଼କୁ ପଡ଼ିଲା । ଦାମ କୁର୍ତ୍ତା ଖଣ୍ଡ ରକ୍ତରେ ବୁଡ଼ୁ ବୁଡ଼ୁ । ତାଙ୍କ

ଫାଟି ରକ୍ତଧାର ବୋହୁ ଆସି ପାଟିରେ ଲାଗିଛୁ । ମୁଣ୍ଡର ବାଳଗୁଡାକ ଲହୁରେ ଲଟପଟ ହୋଇ ବଡ଼ ବିକଳ ଦିଶୁଛି । ଦୁଇଜଣ ଲୋକ ଧରାଧରି କରି ତାକୁ ଗାଡ଼ି ଭିତରକୁ ଉଠାଇଲେ । କାଗଜ ପୁଡ଼ିଆକୁ ଜନ୍ତା ଆଉ ଦେଖି ପାରିନାହିଁ । ଆସ୍ତେ ଆସ୍ତେ ଗାଡ଼ି ଛୁଡ଼ି ଦେଲା ।

ଗାଡ଼ି ଯିବାପରେ ଲୋକେ ଭୁଣ୍ଡ ହୋଇଥିବା ଥାନରୁ ଜନ୍ତା ଚାଲି ଚାଲି ଗଲା । ଝାଙ୍କର ଉପରେ ଦା'ମର କଣ୍ଠା ଲହୁ ମନ୍ଦା ମନ୍ଦା ହୋଇ ପଡ଼ିଛି । ଏକା ନଜରରେ ସେହି ରକ୍ତଓଦା ଭୂଇଁ ଖଣ୍ଡକୁ ସେ କାବା ହୋଇ ଚାହିଁ ରହିଲା······

ଗଦେଇ ମାଟି ବାଟଘର ଭିତରୁ ଥର ଥର ଗଳାରେ ଡାକିଲା, "କଲୋ ଝୁଅ, କଣ କି ?"

ଚମକି ପଡ଼ି ସେ ଧୀରେ ଧୀରେ ବ.ପା ପାଖକୁ ଚାଲିଗଲା ।



# ରଜାପୁଅ

ସଚ୍ଚିଦାନନ୍ଦ ରାଉତରାୟ

ମେଘନାଦ ପାଚେରିଘେରା ହଉଦ ଭିତରେ ରାଜଜେମା ବନ୍ଦୀ । ସିଂହଦୁଆରର ପଞ୍ଝା ପଞ୍ଝା ଯୁଆନ ସିପାହୀ ପହରା ଦେଉଛନ୍ତି ।

କୋଷ୍ଠି ଗଣନା କରି ରାଜାଙ୍କୁ ଜ୍ୟୋତିଷ କହିଛନ୍ତି, ଏ କନ୍ୟା ତାଙ୍କର ଅଶେଷ ମନସ୍ତାପର କାରଣ ହେବେ । ରାଜା ସେଥିପାଇଁ ଜେମାଙ୍କୁ ପିଲାଦିନୁ ଗଡ଼ ବାହାରେ ଘୋର ବନସ୍ତ ଭିତରେ ଏକ ସ୍ଵତନ୍ତ୍ର ନଅର ତୋଳାଇ ତା'ରି ଭିତରେ ବନ୍ଦୀ କରି ରଖିଛନ୍ତି ।

ବାହାରର କୌଣସି ଜନପ୍ରାଣୀ ଯେପରି ଜେମାଙ୍କର ଛାଇ ଦେଖି ନ ପାରେ, ସେଥିପାଇଁ ନଅର ଚାରିପଟେ କଡ଼ା ପହରାର ଲୁହା ବାଡ଼ ଘେରାଇ ରଖାଯାଇଛି । ଦଳ ଦଳ ଯୁଆନ ସିପାହୀଙ୍କ ଉପରେ ଜଗୁଆଳ ହୋଇ ରଖା ହୋଇଛି ବୁଢ଼ା ସର୍ଦ୍ଦାର, ପାହାଡ଼ ସିଂହକୁ—ଛାତିର ଯା'ର ହାତୀର ବଳ—ଆଖି ଦି'ଟା ଯାହାର ବାଘର ନଖ ପରି; ମୁନିଆଁ ଆଉ ଶାଣ ।

ରାଜଜେମାଙ୍କର ମନ ଖରାପ । ସେ ଅତି ଦୁଃଖରେ ବଂଶୀ ବୀଣା ବଜାଉଛନ୍ତି ।

ଅବନ୍ତୀ ଦେଶର ରାଜକୁମାର ଶିକାରକୁ ଯାଇଥିଲେ । କ୍ଳାନ୍ତ ରାଜପୁତ୍ର ଜଙ୍ଗଲ ଭିତରେ ଏକ ପୋଖରୀ କୂଳରେ ବିଶ୍ରାମ କରୁଛନ୍ତି । ଘୋଡ଼ାଟି ନିକଟରେ ବନ୍ଧା ହୋଇଛି, ହାତର ଧନୁ ହୁଗୁଳା ହୋଇ ପଡ଼ିଛି ତଳେ ।

ରାଜକୁମାରୀଙ୍କ କାନ୍ଦଣା ପବନରେ ଭାସି ଆସି ପୋଖରୀ ଜଳ ଲହରୀ ସଙ୍ଗେ ପହଁରି ପହଁରି ଲେଉଟିଯାଉଛି ଭୂଇଁରେ । ରାଜକୁମାର ଚମକି ପଡ଼ିଲେ ।

ଜନହୀନ ଜଙ୍ଗଲ ମଝିରେ ନାରୀର କାନ୍ଦଣା । ରାଜକୁମାର ସେଇ ସ୍ଵର ପଛେ ପଛେ ଯାଇ ପହଞ୍ଚିଲେ ଏକ ଫୁଲଗଛଘେରା, ମେଘନାଦ ପାଚେରି ଡିଙ୍ଗା ଅଟ୍ଟାଳୀ ନିକଟରେ ।

ବାତାୟନ ତଳେ ଠିଆ ହୋଇ ରାଜପୁତ୍ର ଦେଖିଲେ, ରାଜକୁମାରୀ କୋଠା ଉପରୁ ତାଙ୍କରି ଆଡ଼କୁ ଚାହିଁଛନ୍ତି । ଆଖିରେ ତାଙ୍କର ଅବୁଝା ସଙ୍କେତ—ଓଠ ତଳେ ତଳେ କରୁଣ ହାସର ଇସାରା ।

ଏହି ସମୟରେ ନିଜ ଆଖିର ଜଳମିଶା ଲୁହରେ ଖଣ୍ଡେ ଭୁର୍ଜପତ୍ର ଉପରେ କଣ ଲେଖି ରାଜକୁମାରୀ ଅଟ୍ଟାଳୀ ଉପରୁ ଫିଙ୍ଗିଦେଲେ । ସେଥିରେ ତାଙ୍କର ସମସ୍ତ ବୃତ୍ତାନ୍ତ ଲେଖାଥିଲା ।

ରାଜକୁମାର ଧନୁରେ ଗୁଣ ଦେଇ ସିଂହଦ୍ୱାର ଆଡ଼କୁ ଘୋଡ଼ା ବାଗେଇଲେ । ସର୍ଦ୍ଦାର ପାହାଡ଼ ସିଂହ ବସି ଅରଟରେ ସୂତା କାଟୁଛି — ପାହ୍ରମାନେ ଦୁ'ପହରର ଝରରେ ହାଲିଆ ହୋଇ ଯିଏ ଯେଉଁଠି ଶୋଇ ପଡ଼ିଛନ୍ତି । ଏଇ ଜନହୀନ ନିର୍ଜନ ରାଜପୁରୀରେ ଶତ୍ରୁର ଆଶଙ୍କା ସେମାନଙ୍କର ମନକୁ କେବେହେଲେ ଛୁଇଁ ନାହିଁ ।

ରାଜପୁତଙ୍କ ଘୋଡ଼ା ଟାପୁର ଶବ୍ଦ ଶୁଣି ଅପ୍ରସ୍ତୁତ ଜଗୁଆଳବାହିନୀ ଚମକି ପଡ଼ି ଛିଡ଼ାହେଲେ । ସର୍ଦ୍ଦାର ଶଙ୍ଖ ବଜାଇଲା । ସିପାହିମାନେ ହାତରେ ବର୍ଚ୍ଛା ଧରିଲେ ।

ରାଜକୁମାର ଧନୁରେ ଦୁଇଟି ଶର ଯୋଜନା କଲେ । ତା'ପରେ ସର୍ଦ୍ଦାରର ଦୁଇଆଖିକି ଲକ୍ଷ୍ୟ କରି ସେ ବିନ୍ଧିଦେଲେ ଦୁଇଟି ଶର । ସର୍ଦ୍ଦାର ହୁଙ୍କାର ଛାଡ଼ି ତଳେ ପଡ଼ିଗଲା । ପାଇକର ସଙ୍ଗିନ ପରି ହିଂସ୍ର ତାର ଦୁଇଟି ଆଖିରୁ ବୋହିଆସିଲା ଦୁଇଧାର ଗରମ ରକ୍ତ…

ସିପାହିମାନେ ହାତରେ ବର୍ଚ୍ଛା ଧରି ଧାଇଁ ଆସିଲେ ରାଜକୁମାରଙ୍କ ଆଡ଼କୁ । କିନ୍ତୁ ରାଜକୁମାର ଘୋଡ଼ା ଝପଟାଇ ବିଜୁଳି ପରି କ୍ଷଣକେ ଅନ୍ତର୍ଦ୍ଧାନ ହୋଇ ଯାଇ ପୁଣି ପଛକୁ ଫେରିପଡ଼ି ଗୋଟିକ ପରେ ଗୋଟିଏ ସିପାହିକୁ ଶର ମାଡ଼ରେ ଗଛ କାଟିଲା ପରି ତଳକୁ ଖସାଇ ଦେଲେ । ବାକି ଯେଉଁମାନେ ରହିଲେ, ସେମାନଙ୍କ ଭିତରୁ କେତେଜଣ ରାଜକୁମାରଙ୍କ ଦୁଇପଟେ ଯୋଗଯାଇ ତାଙ୍କୁ ମାରିବା ପାଇଁ ବର୍ଚ୍ଛା ଉଠାଇଲେ ।

ଦର୍ଶକମାନେ ଭୟରେ କଳାକାଠ ପଡ଼ିଗଲେ । ରାଜକୁମାର ଜୀବନ-ମରଣର ସନ୍ଧିକ୍ଷଣରେ । ବେହେଲାବାଲା 'ତାର' ଉପରେ ଏକ କରୁଣ ମୂର୍ଚ୍ଛନା ଖେଳାଉଛି । ଗୋଟାଏ ବର୍ଚ୍ଛା ଫଳକ ଆସି ରାଜକୁମାରଙ୍କ ଦକ୍ଷିଣ ବାହୁ ବିଦ୍ଧ କଲା । ଯେଉଁମାନେ ପୁଆଙ୍ଗ ଦେଖୁଥିଲେ, ସେମାନଙ୍କ ଆଖିପତା ଲୁହରେ ଛଳଛଳ ହୋଇ ଆସିଲା । ମାଣିକ ଜାନ ପଣତରେ ଲୁହ ପୋଛୁଛି ।

ରାଜକୁମାର ତୂଣୀରୁ ଆଉ ଗୋଟିଏ ଶର କାଢ଼ିଲେ । ଲଣ୍ଠଣ ଆଉ ମଶାଲ ଆଲୁଅରେ ଶରଟା ଚକ୍ ଚକ୍ କରି ଉଠିଲା । ସିପାହିମାନଙ୍କର ଉଦ୍ୟତ ଆକ୍ରମଣ କ୍ରମେ ନିକଟତର ହୋଇ ଆସୁଛି ।

ଠିକ୍ ଏଇ ସମୟରେ ସେ ଗାର୍ଡିକ୍ ଗତିରେ ସେମାନଙ୍କ ଘେରରୁ ଖସିଯାଇ ସର୍ବାପେକ୍ଷା ନିକଟତମ ସୈନିକର କପାଳ ଲକ୍ଷ୍ୟ କରି ଶର ବିନ୍ଧିଲେ । ସେ ସୈନିକଟା ତଳେ ପଡ଼ିଯିବା ସଙ୍ଗେ ସଙ୍ଗେ ରାଜପୁତ ଅଶ୍ୱାରୁ ତରବାରି ବାହାର କରି ବିଦ୍ୟୁତ୍ ବେଗରେ ଅବଶିଷ୍ଟ ଆକ୍ରମଣକାରୀଙ୍କୁ ଛିନ୍ନଭିନ୍ନ କରି ପକାଇଲେ । ସେମାନେ ପ୍ରାଣ ଘେନି ଯେ ଯୁଆଡ଼େ ଛତଭଙ୍ଗ ଦେଇ ପଳାଇଗଲେ ।

ସମସ୍ତଙ୍କ ଆଖିରେ ପୁଣି ଥରେ ଫେରିଆସିଲା । ମାଣିକ ଲୁହ ପୋଛୁ ପୋଛୁ ଦେଖିଲା, ଶରମାଡ଼ରେ କାତ୍ ହୋଇ ପଞ୍ଝା ପଞ୍ଝା ସିପାହିର ମୃତ ଦେହ ତଳେ ଲେଟିଛି— କାହାର ଜଙ୍ଘ ବାହାରି ପଡ଼ିଛି ତ, କାହାର ଆଖି ତାଳୁକୁ ଖୋସି ହୋଇ ଯାଇଛି; ଅଉ ରାଜକୁମାରୀ ବରଣମାଳା ଧରି ଅଟ୍ଟାଳୀ ପରି ଟୋଳା ହୋଇଥିବା କାଠମଞ୍ଚା ଉପରୁ ଧୀରେ ଧୀରେ ଓହ୍ଲାଇ ଆସୁଛନ୍ତି । ସମସ୍ତଙ୍କ ସହାନୁଭୂତି ରାଜକୁମାରଙ୍କ ଆଡ଼କୁ ଗଲା । ସମସ୍ତେ ତାଙ୍କୁ ଧନ୍ୟ ଧନ୍ୟ କଲେ ।

ବାଉରି ସାହିର ନକୁଳା ରାଜପୁତ୍ର ସୁଆଙ୍ଗ ଛଡ଼ିଥିଲା । ତାର ଧାଉଡ଼ିରବୋଳା ଗୋରା-ଚକଚକ ମୁହଁ, ମୁଣ୍ଡରେ ସୁନା ମକୁଟ, ଦେହରେ ଜରିର ପୋଷାକ, ଠିକ୍ ଅବନ୍ତୀ ଦେଶର ରାଜକୁମାର ପରି ମନାଉଥିଲା ।

ଭାରତଲୀଳା ସରିଲା........ । ସୁଆଙ୍ଗିଆ ଭେଶ ଫିଟାଇ, ବୋଦାକ ପଟ ନେଇ ଯାହା ଝିଙ୍ଗି ଯେଝା ଘରକୁ ଫେରିଗଲେ ।

ତହିଁ ଆରଦିନ ଦି'ପହରର ବେଳା ଧୁ ଧୁ ତାତି, ଗଛପତ୍ର ଖରାରେ ଅଇଁଲା ଯାଉଛନ୍ତି । ରାଜପୁତ୍ର ହଳ ଧରି ବିଲରୁ ଫେରୁଥିଲା, ତାର ଗୋରା ଚକଚକ ମୁହଁରେ ପାଉଡ଼ର ନାହିଁ । ଦିନସାରା ନ ଖାଇ ଖରାରେ ସିଝି ଦିହଟା ତା'ର ତମ୍ବାଳିଆ ଦେଖାଯାଉଛି । ତାର କେତେଲ ଗାଲରୁ ଝାଳ ଟପ ଟପ ହୋଇ ଗଡ଼ି ପଡ଼ୁଛି, ଅଣ୍ଟାରେ ଗୁଡ଼ା'ଏ ଚିଡ଼ା ସେ ଫେଣ୍ଟେ ଏଣ୍ଡୁଓପାଣିଆ କରିଥା ।

ମାଣିକ ତା ବାପ ପାଇଁ ବିଲକୁ କଂସା ଝଣ୍ଡିକରେ ବୁହାଭାତ ନେଇ ଯାଉଥିଲା ।

ଗାଆଁ ଶେଷ ଚୋଟାରେ ଦୁହିଁଙ୍କର ଦେଖା ହେଲା । ନକୁଳ ପାଞ୍ଚଣ ଝଣ୍ଡିକ ଭୂଇଁରେ ଲଗାଇ ତା ଉପରେ ଭରା ଦେଇ ଟିକିଏ ଛିଡ଼ା ହେଲା । ମାଣିକ କହିଲା—"ଜେ ପ୍ରଭୁ !" ତା ପରେ ହସି ଦେଇ ସେ ନିଜ କାମରେ ଚାଲିଗଲା । ରାଜପୁତ୍ର ଫେରିଆସିଲା ତା ଝାଉଦ ଘରକୁ ।

ରାଜପୁତ୍ରର ଦିନ କୌଣସି ମତେ କଟିଯାଏ । ସକାଳୁ ତୋରାଣି କଂସାଏ ଲୁଣ ଟିକିଏ ଦେଇ ଟେଁସି ଦେଇ ସେ ପାଞ୍ଚଣ ଝଣ୍ଡେ ଧରି ବାହାରେ ବିଲକୁ । ଦିନସାରା ବିଲ ମାଟିରେ ଦେହ ମିଶାଇ ସେ କାମ କରେ । କଙ୍କାଳ ତନୁ ଟିକେହେ ମଇଳେ ଝମ୍ପା ଝେକରେ ଅଳକା ହୋଇ ଗଲେ ସେ ହୁଡ଼ା ଉପରେ କେତେବେଳେ କେମିତି ଟିକିଏ ବସି ପଡ଼େ, କାନ୍ଦୁ ମାଲିକ ତାର ଛତା ଝଣ୍ଡେ ଧରି ବିଲ ପାଖ ଆମ୍ବଗଛ ମୂଳେ ପହରା ଦେଉଥାନ୍ତି । ତାଙ୍କର ଅନେ "କଟେ ବସିଗଲୁ କି ? ଖାଇମାଲୁ—କଫାଏ ଲେଖା ତ ଭାତ ଠୁଙ୍କିବୁ—କାମ କରିବୁ କେମିତି ?" ବିଲରୁ ଲେଉଟି ଲୁଖୁରା ଦେହରେ ପାଣି ମନାଏ ଢାଳି ନାକରେ ଆନନେ ଅଇଁଠା ଭାତ ତଣ୍ଡାଏ ତୁଣ୍ଡି ଦେଇ ରାଜପୁତ୍ର ମାଇପୀ ମହଲର ବୋଲ ହାକ

କରେ । ସାନ୍ତାଣୀଙ୍କ ପାନଗୁଆ ଆଣିବା ଠାରୁ ଜେମାଙ୍କ ଛଳୁକୁଣୀ ଉଅଣ ହେବା ପାଇଁ କୋଡ଼ରୁ ଚକଟା ମାଟି ବୋହିବା ପର୍ଯ୍ୟନ୍ତ ସବୁ ପାଇଟି ତାକୁ ତୁଲେଇବାକୁ ପଡ଼େ ।

ତା ପରେ ଟିକିଏ ବେଳ ନେଉଟିଲେ ସେ ପୁଣି ଯାଏ ବିଲକୁ । ସନ୍ଧ୍ୟାବେଳେ ହାଲିଆ ହୋଇ ଫେରି ସେ ବଳଦଙ୍କ ପାଇଁ ଦହଡ଼ ପାଣି ତିଆରେ, ଗୋରୁ ଖୁଆଏ, ଘରର ଯାବତ ପାଇଟିପତ୍ର କରେ ।

ସକାଳୁ ସନ୍ଧ୍ୟାଏ ଏହି ନିର୍ଜନ ଜୀବନଯାତ୍ରା ଭିତରେ ତାର ସୁଖର ମୁହୂର୍ତ୍ତ କେବେ ଆସିଛି କି ନାହିଁ କେହି ଜାଣେ ନାହିଁ । ନକୁଳାର ବାପା ସାନ୍ତ ଘରୁ କରଜ ନେଇଥିବା ଟଙ୍କା ଶୁଝି ନ ପାରି ପୁଅକୁ ପାଞ୍ଚବର୍ଷ ପାଇଁ ବିନା ଦରମାରେ ବନ୍ଧା ଦେଇଛି । ଏହି ଦୀର୍ଘ ପାଞ୍ଚ ବର୍ଷ କାଳ ସିଧାସଳଖ କରି ରାଜପୁତକୁ ପିତୃଋଣ ଶୁଝିବାକୁ ହେବ ।

ରାଜପୁତର ଏହି ଅବସ୍ଥା ଜୀବନ ଭିତରେ ବେଳେ ବେଳେ ସୁଖର ସ୍ୱପ୍ନ ଜାଗିଉଠେ । ପ୍ରତିଦିନ ସେଇ ଦୁର୍ଲଭ ମୁହୂର୍ତ୍ତଟି ପାଇଁ ରାଜପୁତ ଅପେକ୍ଷା କରିଥାଏ ।

ସେନା ମୁହାଁସଞ୍ଜ ବେଳେ ମାଣିକ ଜାଳେଣି କାଠ ଗୋଟାଇ ଘରକୁ ଫେରେ । କାଠ ଗୋଛାକ ଘରେ ଫୋପାଡ଼ି ଦେଇ ସେ ମାଠିଆଟା ଧରି ପାଣି ଆଣିବାକୁ ଯାଏ । ରାଜପୁତ ବିଲରୁ ହଳ ନେଇ ଠିକ୍ ସେତିକି ବେଳକୁ ଫେରି ଆସେ । ପୋଖରୀ କୂଳରେ ବଳଦଙ୍କୁ ମୁକୁଳା କରି ଦେଇ ଗୋଡ଼ହାତ ଧୁଏ । ତୁଠ ପଥର ଉପରେ ଛିଡ଼ା ହୋଇ ମାଣିକ ମୁରୁକି ହସି କହେ—"ରାଜପୁରୁର ।"

ସେଇ କଥା ପଦକ ଶୁଣିବାପାଇଁ ସକାଳ ହେଲେ ନକୁଳାର ମନ କାମରେ ଲାଗେ ନାହିଁ । ସୂର୍ଯ୍ୟ ବୁଡ଼ିବା ସଙ୍ଗେ ସଙ୍ଗେ ଲଙ୍ଗଳ କଣ୍ଡି ଉପରୁ ତାର ହାତ ମୁଠା ଢିଲା ପଡ଼େ । ମୁହଁସଞ୍ଜ ହେବା ମାତ୍ରକେ ସେ ହଳ ଫିଟାଇ ବିଲରୁ ଫେରେ ।

ଦିନେ ଦିନେ ସାହୁକାର ଏତେ ସହଳ ହଳ ଲେଉଟାଇବାକୁ ମନାକରି ନକୁଳାର ଚଉଦ ପୁରୁଷ ଉଦ୍ଧାରି ଗାଳି ଦେଲେ ନକୁଳା ନାନା ଆଳ ଦେଖାଇ ସାଆନ୍ତଙ୍କୁ ବୋଧବାଧ କରେ । କେବେ କହେ "ଡାହାଣ ଗୋଡ଼କୁ ବେଙ୍ଗୀ ଧରିଛି ।" କେବେ ବା କହେ—"ସାଆନ୍ତାଣୀଙ୍କର ପାନଗୁଆ ନାହିଁ—ସନ୍ଧ୍ୟାଳି ଯାଇ ଦୋକାନରୁ କିଣି ଆଣିବାକୁ କହିଥିଲେ ।"

ସେଦିନ ସନ୍ତୁରୁକେ ଦୁଷ୍ଟାମି କରି ମାଣିକ ପଚାରିଲା—"ରାଜପୁତ ! ତୋର ଭଜାଣ୍ଟିଅ କାହିଁ ?"

ନକୁଳା ବୋକାଙ୍କ ଭଳି ଜବାବ ଦେଲା, "ମୁଁ ଜାଣେ ନାହିଁ ।"

ତୁଠ ପାଣିରେ ଜହ୍ନ ଆଲୁଅ ଚେକ ଚେକ ହୋଇ ଝଲସୁଥିଲା । ମାଣିକ ପଚାରିଲା—"ତୁ କେଉଁଠୁ ନେଇଟାଏ ଆଣୁନାହୁଁ । ତୋ ଦେହ ମୁଣ୍ଡର ହେପାଜତ କରିବା ପାଇଁ କିଏ ଅଛି ? ସବୁଦିନେ କଣ ବାଡ଼ୁଅ ଥିବୁ ?"

ମାଣିକର ମନ ବଢ଼ିବା ପାଇଁ ନକଲ କରି ନକୁଳା କହିଲା—"ତୁ ମୋ' ରଜାଝିଅ ହେବୁ ?"

ମାଣିକ ଝିକଏ ହସିଦେଇ ପାଣିମାଠିଆଟା ଧରି ଝୁଲୁ ଝୁଲୁ ହୋଇ ଚାଲିଗଲା । ନକୁଳା ବି ତା ପଛରେ ଅକାରଣରେ ହୋ ହୋ ହୋଇ ହସି ଉଠିଲା ।

× × × ×

ନକୁଳାକୁ ଜର । ଡାଡରେ ଖଇ ଫୁଟୁଛି, ଯାତ୍ରୁକାରଙ୍କର ରାଗରେ ସୀମା ନାହିଁ ।

କେତେଦିନ ହେଲା ତାଙ୍କ କାମଦାମ ପଡ଼ିଆ ହୋଇ ପଡ଼ିଛି । ବାଲିରେ ଗାର ଦିଆ ହୋଇ ନାହିଁ ।

ନକୁଳାର ଅଷ୍ଟାଙ୍ଗ ଶରୀର ଶିଥିଳ ହେଇଛି । ହାଡ଼ଗଣ୍ଠି ଭିତରେ ଯେପରି କୋଟିଏ ବଡ଼ ଚେଲୁଲିଆ ବିଛା ପ୍ରତି ମୁହୂର୍ତ୍ତରେ ତାର ନାଉଡ଼ ମାରୁଛି । ନକୁଳା ଏକରକମ ଅଚେତା ହୋଇ ପଡ଼ିଛି । ତା ମୁହଁରେ ଟୋପାଏ ପାଣି ଟୋପେ ଦେବାକୁ କେହି ନାହିଁ । ଯାଆନ୍ତେ କହୁଛନ୍ତି—"ଶଳା ବେଲ୍‌କରୁଛି ।"

ଆଠଦିନ ହେଲା ମାଣିକ ପୋଖରୀ କୂଳରେ ନକୁଳାକୁ ନ ଦେଖି ଫେରିଯାଉଛି । ତା ମନରେ ଖୁବ ଦୁଃଖ, ତାର ରାଜପୁଅ କାହିଁ ?

କିଛି ଦିନ ପରେ ନକୁଳା ଦେହରେ ବସନ୍ତ ବାହାରିଲା । ପ୍ରଥମେ ଖୁବ୍ ଛୋଟ ଛୋଟ; ତାପରେ ଖୁବ୍ ବଡ଼ ଆକାରରେ ଦେଖାଦେଲା, ଯାଆନ୍ତ ଯାଆନ୍ତାଣୀ ପ୍ରମାଦ ଗଣିଲେ । ପିଲାଛୁଆ ଘର, କେତେବେଳେ କେଉଁ କଥା ।

ଜର ଆଉ ବସନ୍ତ କୋପରେ ନକୁଳା ଯେତେବେଳେ ଅଜ୍ଞାନ, ସେତେବେଳେ ଦିନେ ଯାଆନ୍ତେ ଆସି କହିଲେ—"ତୁ ତୋ ଘରକୁ ଚାଲିଯା, ଏଠି କିଏ ତୋର ହେପାଜତ ନେବ ? ପିଲାଛୁଆ ଘର— କେତେବେଳେ କୋଉ କଥା, ବୁଝିଲୁ ? ତା'ପରେ ତୁ ପର ପୁଅ – କିଛି ହାନି ଲାଭ ହେଲେ କିଏ ମୁଣ୍ଡାଇବ ?" ନକୁଳ ତାଙ୍କ କଥା ଭଲ ରକମ ସମୁଜି ପାରିଲା ନାହିଁ । ଯାଆନ୍ତେ ଅଉ ଥରେ ବଡ଼ ପାଟିରେ ସବୁ କଥା କହିଦେଲେ । ଖାଲି ସେତିକି ନୁହେଁ, ସେଦିନ ଦୟା ପରବଶ ହୋଇ ନକୁଳାକୁ ବାଟଖର୍ଚ୍ଚ କରିବାକୁ ଚାରଟା ପଇସା ମଧ୍ୟ ଦେଲେ । ଦେହ ଭଲ ହୋଇଯିବା ମାତ୍ରକେ ଏଠାକୁ ଚାଲି ଆସିବାକୁ ବାରମ୍ବାର ତାକିଦ୍ କରି ଦେଲେ ।

ନକୁଳାର ଗାଆଁ ସେଠାରୁ ଦୁଇ କୋଶ ବାଟ । ତାର ହଲଚଲ ହେବାକୁ ଜୋ ନାହିଁ ।

ସଞ୍ଜବେଳେ ଯାଆନ୍ତ ଆସି ଦେଖିଲେ ଯେ ନକୁଳା ଯାଇନାହିଁ । ସେ ରାଗରେ ହତଜ୍ଞାନ ହୋଇ ନକୁଳାର ଲୁଗାପଟା ବାଡ଼ି ଖଣ୍ଡିକରେ ପିଣ୍ଡାକୁ ଫିଙ୍ଗିଦେଲେ । କାଲି ସକାଳେ ଘର ଛାଡ଼ି ନ ଗଲେ ହାଣ୍ଡି ଲଗାଇ ବାହାର କରିଦେବେ ବୋଲି ଶେଷ ହୁକୁମ ଝଧ ଦେଇଗଲେ ।

ସକାଳ ହେଲା । ନକୁଳା ନିଷ୍ଠୁର ଧୂସର ଗୁହାଳ ଘରୁ ତାର ଲୁଗାପଟା ଜିନିଷ ଆଣି ବାଣ୍ଡକୁ ବାହାରିଲା । ତା ଦେହଯାକ ପୂଜେଇ ଯାଇଛି । ମାଛି ଭଣ ଭଣ ହୋଇ ବେଢ଼ୁଛନ୍ତି । ଆଜିକୁ ପନ୍ଦର ଦିନ ହେବ ତା ପେଟରେ ଖିଆ ପଶିନାଏ ବି ପଡ଼ିନାହିଁ । କେବଳ ଖାଲି ରାତିରେ ଯା ଆଜ୍ଞାଣୀ ଯେଉଁ ପଣା ଚିଟାପାକ ଦେଇଥିଲେ, ସେତିକି ପିଇଛି ମାତ୍ର ।

ନକୁଳାର ମୁଣ୍ଡ ଝାଇଁ ଝାଇଁ ଡାକୁଛି । ପାଦ ଦୁଇଟା ତାର ଫୁଲ ହୋଇ ଫୁଲି ଆସିଲାଣି । ପେଟର ଗୋଡ଼ ବାଳ ପରସ୍ତକୁ ପରସ୍ତ ଚୋପା ଛାଡ଼ିଯାଉଛି ।

ଗାଁ ମୁଣ୍ଡ ତୋଟା ପାଖରେ ପହଞ୍ଚି ନକୁଳା ଆଉ ପାଦେ ହେଲେ ଚାଲି ପାରିଲା ନାହିଁ । ଭାବିଲା ଗଛ ମୂଳ ଛାଇରେ ବସି ଟିକିଏ ଦମ ମାରି ତା' ପରେ ପଛକେ ବାଟ ଚାଲିବ ।

ଗଛ ମୂଳରେ ଥରେ ବସି ସେ ଆଉ ଉଠି ପାରିଲା ନାହିଁ । ସିଅ ଉପରେ ମୁଣ୍ଡଟାକୁ ରଖି ଲଥ୍ କରି ଭୂଇଁରେ ଶୋଇପଡ଼ିଲା । ତା ଦେହର ବଯାକ ଘା ଗୁଡ଼ିକ ସେତେବେଳକୁ ଖାଲ ଖାଲ ହୋଇ ଭିତରକୁ ପଶି ଯାଇଥିଲା । ହାଡ଼ ଭିତରେ କୋରି ହୋଇ ଯାଇଥିଲା ।

ଆଜକୁ ପନ୍ଦର ଦିନ ହେବ ମାଣିକ ତାର ରଜାପୁଅର ଦେଖା ପାଇନାହିଁ । ନିତି ପୋଖରୀ କୂଳରେ ବସି ବସି ଫେରିଯାଉଛି । ତା ଆଖିରେ ନାଚୁଛି ତା'ର ରାଜପୁତ୍ର । ତା'ର ଗୋରା ତକତକ ମୁହଁ, ସୁନାର ମୁକୁଟ, ଜରି ପୋଷାକ ପିନ୍ଧା ତା' ସୁନ୍ଦର ଗୋରା ଦେହଟା ! ! ସେ ଦିନ ରାତିରେ ମାଣିକ ତାର ରାଜପୁତ୍ରକୁ ସ୍ୱପ୍ନ ଦେଖିଲା । ମାଣିକର ମନେହେଲା, ସେ ଯେପରି ହଠାତ୍ ରଜାଝିଅ ପାଲଟି ଯାଇଛି । ତା'ର ରଜାପୁଅ ସେ ଉଦ୍ଧାର କରିବାକୁ ଆସି ସିପାହି-ସର୍ଦ୍ଦାର ହାବୁଡ଼ରେ ପଡ଼ିଲା ରଜାଘର ଫଉଜ ଆଁ କରି ତାକୁ ଗିଳି ଦେବାକୁ ଧାଇଁ ଆସିଲା । ମାଣିକର ଚିହୁଁ କରି ନିଦ ଭାଙ୍ଗିଗଲା ।

ସକାଳ ହେଲା । ମାଣିକ ଜାଳେଣିକାଠ ଗୋଟାଇବାକୁ ତୋଟା ଆଡ଼େ ବାହାରିଲା । କାଠ ଗୋଟାଉ ଗୋଟାଉ ଦେଖିଲା, ଗୋଟାଏ ଜାଗାରେ ପଲ ପଲ ହୋଇ କାଉ ବେଢ଼ିଛନ୍ତି । କେମିତି ଗୋଟେ ଏ ପଟୁ ଆଇଁଷିଣିଆ ଗନ୍ଧ ଭାସି ଆସୁଛି ।

ମାଣିକ ସେଇ ବୁଢା ମୂଳକୁ ଯାଇ ଦେଖିଲା ଗୋଟାଏ ମଣିଷର ଦେହ । ମଣିଷଟା ବଞ୍ଚିଚି, କୁରୁଳ କୁରୁ କରି ଗୋଟାଏ ଆଖିରେ ଚାହୁଁଚି । ତାର ମୁହଁଟ ଯାକ ଘା'ରେ ପଚି ଯାଇଚି । ଦେହଟା ପୂଜେଇ ଯାଇ ଭାରି ଦୁର୍ଗନ୍ଧ ହେଉଚି । କାଉ ତାର ଗୋଟାଏ ଆଖି ଡାଉ ଦେଇଛନ୍ତି ଆଉ କେଣାର ଗୋଟାଏ ମାଉଁସିଆ ଅଂଶକୁ ଖୁମ୍ପି ଖୁମ୍ପି ଖାଇ ପକାଇଚନ୍ତି ।

ଭୟରେ ମାଣିକ ଥକା ମାରିଗଲା । ସେ ମଣିଷଟାକୁ ଚିହ୍ନିବାକୁ ଚେଷ୍ଟା କଲା, ପ୍ରଥମେ ପାରିଲା ନାହିଁ । ତା'ପରେ ଦୋ ଦୋ ଚିହ୍ନା ହେଲା । ତା'ପରେ ସେ ଯେତେବେଳେ ଚିହ୍ନିଲା ସେ ଆଶ୍ଚର୍ଯ୍ୟ ହୋଇ କଥା କହି ପାରିଲା ନାହିଁ । କିଛିକ୍ଷଣ ପରେ କ୍ଷୀଣ ସ୍ୱରରେ ଉଚ୍ଚାରଣ କଲା 'ରଜାପୁଅ' !

ରାଜପୁତ୍ରର ଆର ଆଖିଟା ଏହି ସମୟରେ କାଉ ଖୋଳି ପକାଇଲେ । କୌଣସି ଜବାବ ଦେଇ ପାରିଲା ନାହିଁ ।



# କଡ଼ମା ଜହ୍ନି

ରାଜକିଶୋର ପଟ୍ଟନାୟକ

---

ଦିନକର କଥା ନୁହେଁ—ପ୍ରତି ଦିନର ଅଭ୍ୟାସ । ଗୋପାଳବାବୁ ସକାଳ ହେଲେ ତାଙ୍କର ଛୋଟିଆ ପାଚଶି-ଡେସି ବାଗକୁ ଚାଲିଯାନ୍ତି । ସନ୍ଧ୍ୟାରେ ସେ ଯେପରି ଘରକରଣାର ସୁଖ ଦୁଃଖ ସ୍ତ୍ରୀଙ୍କଠାରୁ ବୁଝନ୍ତି, ସେମିତି ସକାଳେ ସେ ଯାଇଥା'ନ୍ତି—ତାଙ୍କର ଅଗଣା ବାଗକୁ ।

ହାତେ ହାତେ ସବୁ କାମ । ଛୋଟ ଛୋଟ କିଆରି ହୋଇଛି । ପାଣି ମଡ଼ାଇବା କାମଠାରୁ ଆରମ୍ଭ କରି ବସ୍ତା ଓ ଖତ ପର୍ଯ୍ୟନ୍ତ । ପଡ଼ୋଶୀ ଓ ବନ୍ଧୁମାନେ ଟାପରା କରନ୍ତି—ଏତେ ମିହନତ ନ କରି ଦି' ପୁଞ୍ଜା କୁକୁଡ଼ା-ବତକ ପୋଷିଲେ ବେଶି ଲାଭ ହୁଅନ୍ତା ।

—ଲାଭ ଲୋକସାନ ମଣିଷର ହିସାବରେ ପଶିଲେ ସେ ଆଉ କାମ କରିବ ନାହିଁ । କାମ ଆରମ୍ଭ କଲାବେଳେ କିଏ କହିବ ମେହେନତ କେତେ ଲାଗିବ ଆଉ ଆମଦାନୀ କେତେ ହେବ ? ଗୋପାଳ ବାବୁ ହସି ପଚାରନ୍ତି ସମସ୍ତଙ୍କୁ ।

—ଆଚ୍ଛା, ହିସାବ ରଖି କହିଲେ ମୂଲ କେତେ ହେଲା ? ଆଉ ମିଳିଲା କେତେ ? ଗଛ ହିସାବ ନାହିଁ । ସେଥିରେ ଧନ୍ଦି ହେବା ଖାଲି ବଡ଼ ଲୋକଙ୍କୁ ପୋଷାଏ ।

ନାହିଁ, ବାବୁ; ଏଠିସବୁ ସହର । ଚାରିଆଡ଼େ କୋଠା । ଆଖ ପାଖରେ ବଡ଼ ବଡ଼ ଗଛ । କୁକୁଡ଼ କାକର କୁଆଡ଼ୁ ପାଇବ ଏଇ ବାଗ ଖଣ୍ଡିକ ? ସେଥିରେ ପୁଣି ଗଛ ପତ୍ର ଭିତରେ ଛୁଞ୍ଚି ହୋଇ ଯେଉଁ ଖରା ଟିକକ ଆସୁଛି, ସେଥିରେ ଗଛ ଅବା କ'ଣ ହେବ ?

—ଆଉ ତେବେ ଗୋପାଳବାବୁ ବାଜି ଲଗାଇ କାମ କଲାପରି ଏମିତି ଛନ୍ଦି ହେଉଛନ୍ତି କାହିଁକି ?

—ଯାହା କହନ୍ତୁ ଆପଣ । ଏହି ମାଟି ଅଗଣା ମୋର ଭାରି ଆଦରର ଥାଳି ଖଣ୍ଡେ । ତାହାକୁ କ'ଣ ଧଳଥାଏ ।

ମତେ ମିଳଛି ଏତିକି । ମୁଁ ଏଇ ଝଣ୍ଟିକର ସିନା ମାଲିକ । ମୋର କି ବଳ ଅଛି ଯେ ଆଖ ପାଖର କୋଠାବାଡ଼ି ଗଛବୃକ୍ଷକୁ ଶୁଆଇ ଦେବ ମାଟିରେ । ସ୍ୱା'ଙ୍କୁ ମନେକରେ ମୋର ପୁରୁଣା ଘଡ଼ି ଅବା ପୁରୁଣା ପୋଷାକ । ଯତ୍ନ କରୁଛି ବୋଲି ଚଳିଛି ।

—କ'ଣ ସବୁ ଏ ବର୍ଷ ଫଳେଇଛନ୍ତି ?

—କିଛି ନାହିଁ ଦୁଇଟା ମଟକା, ଦ'ବୁଦା କଞ୍ଚାରୁ ଆଉ କେଇଟି ଜହ୍ନି-ବୁଦା ।

—ସ୍ୱା'ଙ୍କୁ ବଜାରରୁ ଆଣିଲେ··· ଯାହା ଏଠି ଫଳିବ ସବୁଯାକ ହେଉ କୋଡ଼ିଏ ଟଙ୍କା···ନଇଲେ ବଢ଼ାଇ ଧରନ୍ତୁ ତିରିଶି ଟଙ୍କା । ଆପଣଙ୍କର ପରିଶ୍ରମର ମୂଲ୍ୟ କେତେ ?

ହସି ଗୋପାଳବାବୁ କହନ୍ତି— ମଣିଷର ପରିଶ୍ରମର ମୂଲ କରନ୍ତି ଉପରେ ଠାକୁର । ସେ କାହାକୁ ଘଣ୍ଟା ପ୍ରତି ଶହେ ପଚିଶ ଟଙ୍କା ଯେମିତି ଦଅନ୍ତି, ସେମିତି କାହାକୁ ଦିଣ ପଚାଶ ପଇସା ବି ଦେଇଥାନ୍ତି । ଇଆ ବୋଲି କ'ଣ ଖଟିଖିଆ ସତ୍ୟାଗ୍ରହ କରିଛନ୍ତି କି ?

ହସନ୍ତୁଏ ସମସ୍ତଙ୍କର । ବାବୁଙ୍କରକଥାଶୁଣି ଖର । ଚାକିରିରେ ପ୍ରମୋଶନ ନ ପାଇଲେ ସେ ତାଙ୍କର ମହକୁମାକୁ ତୁଲଷ୍ଟୁଲ କରି ପକାନ୍ତି । ତାଙ୍କର କାମର ମଜୁରି ଓ ସନମାନ ଊଣା ହୋଇଗଲା—ମେଦନୀ କମ୍ପିବ ଓ ବସୁଧା ଥରିବ । କିନ୍ତୁ ନିଜର ବାରି ଅଗଣାରେ ଗଛର ଫଳ-ଫୁଲଶ୍ରୀ ପାଇଁ ତାଙ୍କର ହୋଇ ଏଇ ଯୁକ୍ତି ତର୍କ ।

ଜହ୍ନିବୁଡ଼ି ପାଖକୁ ଯାଇ ଗୋପାଳବାବୁ କହନ୍ତି— ମୋର ଇଜ୍ଜତ ରଖିବୁ । ବୁଝିଲୁରେ ଲଟା । ତୋର ଦାମ୍ ନାହିଁ ଏଇ ଆଜ୍ଜୁ ପୋଟଳ ସମାଜରେ । ଭଲ ଫଳିବୁ । ଲୋକଙ୍କର ଆଖିକୁ ଟାଣିବୁ ନିଜ ପ୍ରତି ।

ଝଡ଼ରେ ପ୍ରଜାପତି ଓ ଭଅଁର ଉଡ଼ିଯାନ୍ତି ଗୋପାଳବାବୁଙ୍କ ଘୁହିଁ ଘୁହିଁ । ଏତେ ବଡ଼ ମଣିଷଟାଏ । ମଣିଷ ଭିତରେ ଏତେ ପ୍ରତାପୀ ହାକିମଟାଏ । ହାକିମଙ୍କ ମେଲରେ ଏତେ ଚଉଆଖିଆ ମାତବର ଲୋକଟାଏ । ତାହାର ପୁଣି ବୁଦ୍ଧି ନଅଣ୍ଟ ପଡ଼ିଛି ଯେ ସେ ସାମାନ୍ୟ ଜହ୍ନିବୁଡ଼ି ପାଖରେ ଠିଆ ହୋଇ ତା'କୁ ମନେ ମନେ ପ୍ରାର୍ଥନା କରୁଛି— ଫଳ ଦେବାକୁ ।

ଷ୍ଟେଢୁଅ ସକାଳର ଝପଟା ପବନରେ ଜହ୍ନିବୁଦା ଦୋହଲି ଯାଇଥିଲା । କଞ୍ଚି ଉପରେ ଫୁଲ ଶୁଖି ଆସୁଛି । ପତର ଗୁଡ଼ାକ କାକର ଝଡ଼ାଇ କେମିତି ନୁଖୁରା ଦିଶିଲେଣି ।

—ଆରେ ଏତେ ଜହ୍ନି । ସବୁ ଗୁଡ଼ାକ ଗ୍ରେଟ । କଡ଼ମା ଜହ୍ନି ଭୁଲିଗଲଣି ତାହାର ଆଗୁଆ ଦ'ଦିନ ମୁଥ ବଡ଼ ଜହ୍ନିମାନଙ୍କୁ । ଯେଉଁ ବୁଦା ଗୁଡ଼ାଏରୁ ଉଣା ଜହ୍ନି ଦେଇ ନଥିଲା । ସେଇ ବୁଦାରେ ଏବେ ଏଡ଼େ ଡେ଼ମ୍ଫା ଡେ଼ମ୍ଫା ଫଳ ।

କ'ଣ ଅଲଗା ଗଛ କି ? ବୋଧହୁଏ ଦ' ପ୍ରକାରର ମଞ୍ଜି ମିଶିଥିଲା — ବଡ଼ ଜହ୍ନି ଆଉ ମେଣ୍ଡି ଜହ୍ନି ।

ବୁଲିଗଲେ ଅନ୍ୟ ବୁଦାକୁ । ପତ୍ରୁଆ ଲଟା ଗୁଡ଼ାକରେ ଝୁଲୁଛି ସେଇ ଗୁଚ୍ଛ ଖଣ୍ଡକିଆ ଫଳ । ଦ' ଦିନ ଦିନକରେ ସେ ନେଇଯାନ୍ତି ଖେଷେଇ ଘର ପାଖକୁ ।

ସେଠି ପତ୍ନଙ୍କ ମହାରାଣୀଙ୍କର ଅଧିଷ୍ଠାତ୍ରୀ ଦେବୀ ଭାବରେ ସ୍ତ୍ରୀ' ଦରବାର ଖୋଲିଥାନ୍ତି ପଣବା ଟେକେଇକୁ ଆଗରେ ରଖି ।

—ପୁଣି ଜହ୍ନି ଆଣିଲ ? ମନା କରିଥିଲି ପରା । ପିଲାମାନେ ଚିଡ଼ିଲେଣି ଜହ୍ନିରାଇ ଖାଇବାକୁ । ଦିନେ ଦିନା ଅକାଳେ ସକାଳେ ଭଲ ଲାଗନ୍ତା ।

—ଆମର ଜହ୍ନି ପରା ।

—ହେଲେ କ'ଣ ଗଲା ? ଏଇ ଜହ୍ନି ବାଗରେ ହେଲା ବୋଲି କ'ଣ ପୋଟଳ-କାଙ୍କଡ଼ର ସୁଆଦ ଦବ ?

—ବୁଢା ହେଇ ଯାଉଥିଲା । ପାଚିଗଲେ ଦେଇ ହୁଅନ୍ତା ନାହିଁ । ଜାଲି ହୋଇ ଗଲେ ପାଣିଚିଆ ଲାଗନ୍ତା ।

—ବୁଢା ହେଲେ କି ପିଲା ଜନ୍ମହେଲେ କ'ଣ ହେଲା ? ପୁଅ କହୁଛି ଯେ ଜହ୍ନି ଦେଖିଲେ ସେ ଆଉ ଖାଇବ ନାହିଁ । ଭାତଥାଳି ଫୋପାଡ଼ି ଦବ ।

—ପିଲାମାନେ ବୁଝି ନାହାନ୍ତି । ତମେ ତାଙ୍କର ମା' ହେଇ ପାଳିଆ ଧରୁଛ । ତମେ ଯେମିତି ଗୋଟାଏ ମା— ଜହ୍ନି ଲଟାଟି ସେମିତି ମା ।

—ହଉ ରଖିଦିଅ ସେଇ ତତ୍ତ୍ୱଗୁଡ଼ାକ । ଜହ୍ନି ଲଟାକୁ କ'ଣ ଦୋଭେଇ ହବ କି ? ଘର ତ ପ୍ରୀତି କଥା ଗୁଡ଼ିକରେ ।

ଗୋପାଳବାବୁ ଠିଆ ହୋଇ ରହିଲେ ସେଇ ପଣବା ପାଖରେ । ହାତ ଯାଉଛି ଆଳୁ-ପୋଟଳ ପାଖକୁ । ସେମାନେ ସମସ୍ତେ ଉଚ୍ଚ ବଂଶର ଲୋକ । ଆଉ ଗୋପାଳବାବୁଙ୍କ ହାତ ଆଙ୍ଗୁଳିରେ କେଇଟି ଜହ୍ନି—କଡମା ଜହ୍ନି । ସେଗୁଡ଼ିକ ଅଦରକାରୀ ଅସ୍ପୃଶ୍ୟ ।

ଯାହାକୁ ହାତରେ ପାରସ୍ପତ କରି ବଢ଼ାଇ ଥିଲେ ସିଏ ଅଦରକାରୀ । ଆଉ ଯାହାକୁ ନିକମା ଭାବି କହୁଡ଼ି ଦେଇ ବଜାରରୁ କିଣିଥିଲେ ସେଇ ହେଲା ଉପକାରୀ ... ମନ୍ଦ କ'ଣ ? ପ୍ରକୃତରେ ନିଜ ଲୋକଙ୍କଠାରୁ ପରମଣିଷ ବଡ଼ ।

କେଡ଼େ କୃତଘ୍ନ ଏଇ ମଣିଷ ସମାଜ । ନ ହେଲେ ଏଠି ଶ୍ଳେଷ—ନାଶ—ଜନାକାଶ ଏତେ ଅଧିକ ହୁଅନ୍ତା କେମିତି ?

—ଠିଆ ହେଲ ଯେ । ଯାଅ ଦେଖ ଗଛରେ ସଅଁ ବାଳୁଆ ହେବେଣି । ଏଣ୍ଡୁଅ ଆସିବଣି ଫୁଲଫଳ ନଷ୍ଟ କରିବାକୁ ।

ଭାବୁଛି ଏଇ ଗଛ ଲଟାକୁ ଉଠାଇ ଦେଇ କୁକୁଡ଼ା ଆଠଟା ଆଣିବି । ତେବେ ଆଉ ଏଇସବୁ ଗୋଳମାଳ ରହିବ ନାହିଁ । ପିଲାମାନେ ଆନନ୍ଦରେ ଅଣ୍ଡାଖାଇ ମୋଟାରୁଣ୍ଡ ହେବେ ।

ସ୍ତ୍ରୀ ଚାହିଁଲେ ଗୋପାଳବାବୁଙ୍କ ମୁହଁକୁ । ଆଖି ଦୁଇଟିରେ ଆଗ୍ରହ ନାହିଁ । ହତାଶର କଳାଗାର ସେଠି ଡେଇଁ ବୁଲୁଛି । ହାତରେ ଧରିଥିବା ଜହ୍ନି ପୁଞ୍ଜାକ ଉପଲକ୍ଷ୍ୟ ହୋଇ ସେମିତି ଝୁଲୁଛନ୍ତି ।

—ହଉ ଆଣ । ଦେଖେଁ । ···ଏତେ ଶ୍ରେଷ୍ଟ କ'ଣ ?

ଏଗୁଡ଼ାକ ସେଇ ଜହ୍ନି ଯେ । କଡ଼ମା ହୋଇଗଲାଣି । ଗଛ ତାହାର ଯେଉଁ ଦ ମୁଥ ମୁଥେ ଭଲ ରସୁଆଳ ଓ ଶସିଆଳ ହେଇ ଫଳିଗଲା, ଏବେ ସେ ଏତକ ଫଳେଇଛି । ମରିଯିବ ଏଥର ।

—କ'ଣ ? କେମ୍ପା, ପୋକସ୍···

—ସତେ ତ । ଗୋପାଳବାବୁ ଝୁଙ୍କି ପଡ଼ି ଦେଖିଲେ .... ହୁଁ । ହବନାହିଁ କେମିତି । ଗଛ ପାକଳ ହୋଇ ଗଲାଣି । ଆଉ ତାହାର ବଳ କାହିଁ ରୋଗ ବଳସଗ ଏଡ଼ାଇବାକୁ ।

ଗୋପାଳ ବାବୁଙ୍କର ସ୍ତ୍ରୀଙ୍କ ମନରେ ସହାନୁଭୂତି ଆସିଲା—ନିଜପ୍ରତି । ବହୁତ ଦୂରରେ ସେହି ରୂପର ଆଲୁଅ ଅଉ ଝଳ ଲିଭିଗଲାଣି । ଦିନେ ସେ ନିଜକୁ ଚାହିଁ ଖୁସିରେ କହୁଥିଲେ —ଏଇ ଦେହ ମୋର ।

ଏବେ ସେ ବେଳେବେଳେ ନିଜକୁ ପଚାରନ୍ତି—ସତେ କ'ଣ ଏଇ ଝଣ୍ଡିଆ ଖାବୁସ ଦେହ ନେଇ ମୁଁ ଶଶୁଘରକୁ ଆସିଥିଲି ? ଏଇ ଦେହ କ'ଣ ସୁନା ଅଲଙ୍କାର ପାଟ-ମଠାରେ ଶୋଭିଥିଲା ? ··· ଆହାରେ, କଡ଼ମା ଜହ୍ନି ଗୁଡ଼ାକ । କେତେ ଗାଳି ଦେଲି ତମକୁ···ତୁମେ ବା କ'ଣ କରି ପାରନ୍ତ ?

ଭାତଥାଳ ପରଶିଲା ବେଳେ ସ୍ତ୍ରୀ ତାଙ୍କୁ ପଚାରିଥିଲେ—କେମିତି ହୋଇଛି ? ସେଇ ପୋକରା କଡ଼ମାଗୁଡ଼ାକ ?

— ସତେ ମ ! ଖୁବ ଭଲ ! ଖୁବ ସୁଆଦ !

—ସତରେ ନା ଆଣିଛ ବୋଲି ସୁପାରସ୍ କରୁଛ ?

— ତମେ ଖାଇଲେ ଜାଣିବ । ଭଗବାନ ଏଇ କଡ଼ମା ପୋକରା ଜନ୍ତୁଙ୍କୁ ବି ନୂଆ ସୁଆଦ ଦେଇଛନ୍ତି । ପଦ୍ମଫୁଲ ଧୂସୁରା ମୂଥର ଫଳ ଆକାରରେ ବଡ଼; କିନ୍ତୁ ସୁଆଦରେ ନିରସ ....।

ଗୋପାଳବାବୁଙ୍କର ମନ ଭରି ଯାଇଥିଲା ସହାନୁଭୂତିର ନୂଆ ମୂଲ୍ୟାୟନରେ । ଆଖି ଦୁଇଟି ତେଜି ଉଠିଥିଲା ନୂଆ ଅନୁଭବର ପ୍ରଖରତାରେ ।

———

# ଆଦମ ଓ ଶତରୂପା

ସୁରେନ୍ଦ୍ର ମହାନ୍ତି

ମନୁଷ୍ୟ ସର୍ଜନାର ପ୍ରାକ୍‌କାଳରେ ସୃଷ୍ଟିର ଅମଳିନ ପ୍ରଭାତ....। ଜନହୀନ ପ୍ରାଗୈତିହାସିକ ଆରଣ୍ୟ ବିସ୍ତୃତି ମନୁଷ୍ୟର କ୍ଷୁଧା, ସଂଗ୍ରାମ, ମିଳନ, ବିଚ୍ଛେଦ, ପ୍ରେମ ଓ ପ୍ରଜନନର କୋଳାହଳରେ ତଥାପି ମୁଖରିତ ହୋଇନାହିଁ । ଏକ ନୂତନ ସଙ୍ଗୀତର ଆଦ୍ୟ କୁଣ୍ଠିତ ଆଳାପ ପରି ଏକ ନୂତନ କବିତାର ଅସ୍ଫୁଟ ଗୁଞ୍ଜରଣ ପରି, ଏକ ନୂତନ ଆଲେଖ୍ୟର ଦୁଇଟି ପ୍ରାଥମିକ ଆଦ୍ୟ ସଲଜ୍ଜ ରେଖାପରି, ଏହି ଅନନ୍ତ ଓ କାଳହୀନ ବିସ୍ତୃତିର ପୃଷ୍ଠଭୂମିରେ....କେବଳ ଆଦମ ଓ ଶତରୂପା ।

ଅରଣ୍ୟରୁ ଅରଣ୍ୟ, ଗହ୍ୱରରୁ ଗହ୍ୱର, ପର୍ବତରୁ ପର୍ବତ ବୁଲି ବୁଲି, ଆଦମ ଅନ୍ୱେଷଣ କରେ ଖାଦ୍ୟ....। ପଥରରେ ପଥର ଘଷି ନିଆଁର ଫୁଲିଙ୍ଗା କାଢ଼େ । ଏକ ତୃପ୍ତିହୀନ କ୍ଷୁଧା ଓ ଅନ୍ତହୀନ ଅଶାନ୍ତି ତା'ର ନିତ୍ୟ ସହଚର, ସେଇଥିରେ ତା'ର ପରିତୃପ୍ତି ।

ଆଉ ଶତରୂପା, ଗିରି-ନିର୍ଝରଣୀର ତଟଭୂମିରେ ବସି, ଦିନ ସାରା ଖାଲି ରୂପ ଓ ଶୃଙ୍ଗାରର ମାୟାଜାଲ ବୁଣେ । ....ସେଇଥିରେ ତାର ଆନନ୍ଦ ।

ସବୁଦିନ ପରି ଦିନେ, ଜଳ-ମୁକୁରକୁ ଚାହିଁ ଶତରୂପା ବସନ୍ତର ନବ କିଶଳୟ ଓ ମୁକୁଳରେ କେଶ-ରଚନା କରୁଥିଲା । ଗୋଟିଏ ବନମୃଗ ବେଳେ ବେଳେ ଶତ-ରୂପାର କବରୀରେ ନବ କିଶଳୟର ଲୋଭ ସମ୍ବରଣ କରି ନ ପାରି, ଲୋଲ ଜିହ୍ୱା ଲମ୍ବାଇ ଶତରୂପାର ଗ୍ରୀବାକୁ ଦଂଶନ କରୁଥିଲା । ଏକ ବିଚିତ୍ର ଅନୁଭୂତିର ତୀବ୍ରତାରେ ଶତରୂପାର ଦେହ ରୋମାଞ୍ଚିତ ହୋଇ ଉଠୁଥିଲା । ଯେଉଁ ଅନାଗତର ପ୍ରତୀକ୍ଷାରେ ଶତରୂପାର ପ୍ରତିଟି ମୁହୂର୍ତ୍ତ ଉତ୍କଣ୍ଠିତ, ସେହି ଅନାଗତର ସ୍ପର୍ଶ ଯେପରି ଏହି ମୃଗର ଲୋଲ ଜିହ୍ୱାରେ ଲାଗି ରହିଥିଲା । ମାତ୍ର କିଏ ସେ ଅନାଗତ ? ଅରଣ୍ୟ-ପଥରେ ପତ୍ର-ମର୍ମର, ସେହି ଅନାଗତର ପଦଧ୍ୱନିର ଭ୍ରମ ସୃଷ୍ଟି କରୁଥିଲା ବେଳେ ବେଳେ । ଶତରୂପା ଚକିତ ଦୃଷ୍ଟିରେ ଚାହିଁଲା, ନିର୍ଜନ ଅରଣ୍ୟ-ପଥଆଡ଼େ । ଆଦମ ଗୋଟିଏ ମୃତ ପଶୁକୁ

କାନ୍ଧ ଉପରେ ରଖି ନିତ୍ୟ-ଅଭ୍ୟସ୍ତ ପଥରେ ଫେରୁଥିଲା । ଆଜି ଆଦମକୁ ଦେଖି କି ଏକ ଅବ୍ୟକ୍ତ ଓ ଅବର୍ଣ୍ଣନୀୟ ଅତୃପ୍ତିରେ କେଜାଣି, ଶତରୂପା ଅନ୍ତଃସ୍ଥଳ ଜର୍ଜରିତ ହୋଇଗଲା । ଅକାରଣରେ ଶତରୂପା କଟୀ ଚାରିପଟେ ପଦ୍ମମେଖଳାର ବନ୍ଧନ ଦୃଢ଼ କରୁ କରୁ ତାହା ଶିଥିଳ ହୋଇ ପଡ଼ିଲା । କେଜାଣି କାହିଁକି ଆଜି ଶତରୂପା ଦୁଇ ତୃଷିତ ଆଖି ମେଲି—ଆଦମକୁ ଚାହିଁବାର ଲୋଭ ସମ୍ବରଣ କରି ପାରିଲା ନାହିଁ ।

ଆଦମ କିନ୍ତୁ ଦେହରୁ ମୃତ ପଶୁର ଭାର ତଳେ ଫିଙ୍ଗି ଦେଇ । ପୁଣି ଅରଣ୍ୟ ପଥରେ ଅଦୃଶ୍ୟ ହୋଇଗଲା । ଘଞ୍ଚ ଅରଣ୍ୟର ପତ୍ର ମର୍ମର ଏକ ତୀବ୍ର ଆକୁଳତାରେ ଆକ୍ରାନ୍ତ ହୋଇ ଉଠିଲା । ଶତରୂପା ଗୋଟିଏ ଦୀର୍ଘଶ୍ୱାସ ପକାଇ ପୁଣି ଜଳ ମୁକୁରକୁ ଚାହିଁ, କେଶରଚନାରେ ନିଜକୁ ଭୁଲିଗଲା ।

ଶତରୂପା ଓ ଆଦମର ଜୀବନରେ ଏ ନିତି ଦିନର କାହାଣୀ ।

କିନ୍ତୁ ସେ ଗୋଟିଏ ନୂତନ ପ୍ରଭାତ .... ।

ଏକ ସୁନ୍ଦର ଓ କଲ୍ୟାଣମୟୀ ସୃଷ୍ଟିର ପ୍ରତୀକ୍ଷାରେ, ଏତେ ଯୁଗ, ଯୁଗାନ୍ତରର ବନ୍ଧ୍ୟା-ପୃଥିବୀ, ଅଭିସାରିକା ପରି ଉତ୍କଣ୍ଠିତା ହୋଇ ଉଠିଥିଲା । ସୃଷ୍ଟିର ଏକ ସୁତୀବ୍ର ପିପାସାରେ ଅରଣ୍ୟ ବକ୍ଷ ଅଶାନ୍ତ ହୋଇ ଉଠିଥିଲା । ଗିରିନିର୍ଝରିଣୀର ଜଳବେଣୀରେ, ମୁକୁରର ପ୍ରଶାନ୍ତି ନ ଥିଲା, ସେଠି ଥିଲା ଏକ ଅଶାନ୍ତ ଉଦ୍‌ବେଳନ, ବୃକ୍ଷ-ବୀଥିକାର ପତ୍ର ମର୍ମରରେ ମର୍ମରିତ ହେଉଥିଲା । ଏକ ବ୍ୟାକୁଳ ଆହ୍ୱାନ । ଲେଲିହ ଜିହ୍ୱା-ସ୍ପର୍ଶରେ ପ୍ରତିଦିନର ନିସ୍ୱାଦ ଚଟୁଳତା ନ ଥିଲା....ସେଥିରେ ଥିଲା ଏକ ବନମୃଗର ବିଶ୍ୱଗ୍ରାସୀ କ୍ଷୁଧାର ଦହନ ।

ଚିରଦିନର ପରିଚିତ ପୃଥିବୀ ଓ ପ୍ରଭାତ ଠାରୁ ଏହା ଯେପରି ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ଶତରୂପା ବିହ୍ୱଳ କଣ୍ଠରେ ଚିତ୍କାର କଲା··· 'ଆଦମ, ଆଦମ !'

ନିର୍ଜନ ବନଭୂମିରେ ଶତରୂପାର ଆହ୍ୱାନ, ପୁଣି ଶତରୂପା ପାଖକୁ ଫେରି ଆସିଲା । ସବୁଦିନ ପରି ଶତରୂପା ନିର୍ଝରିଣୀର ଜଳଧାରରେ ପାଦ ବୁଡ଼ାଇ ବସି, ଶୃଙ୍ଗାରର ମାୟାଜାଲ ବୁଣିବାରେ ଆଜି ନିଜକୁ ହଜାଇ ଦେଇ ପାରିଲା ନାହିଁ । ଆଦମର ସନ୍ଧାନରେ ଶତରୂପା ଘଞ୍ଚ ଅରଣ୍ୟର ନିର୍ଜନ ପଥରେ ଅଦୃଶ୍ୟ ହୋଇଗଲା··· ।

ବହୁ ପ୍ରାନ୍ତର, ବହୁ ନଦୀ, ବହୁ କାନ୍ତାର, ବହୁ ପର୍ବତ ଅତିକ୍ରମ କରି ଦିନେ ଶତରୂପା ଆଦମର ସନ୍ଧାନ ପାଇଲା । ଆଦମ ଗୋଟିଏ ପାର୍ବତ୍ୟ—ଗହ୍ୱରରେ ପ୍ରବେଶ ଦ୍ୱାର ପାଖରେ ବସି, ପଥର ଦେହରେ ପଥର ଘଷି, ଗୋଟିଏ ଶସ୍ତ୍ର ନିର୍ମାଣ କରୁଥିଲା ।

ପଥର ଦେହରେ ପଥର ଘଷିଲା ବେଳେ ଆଦମ ଦେହର ମାଂସପେଶୀ ଗୁଡ଼ିକ ଉଦ୍‌ବେଳିତ ତରଙ୍ଗପରି ନାଚି ଉଠୁଥିଲା । ଶତରୂପା ଆଦମର ଦେହ ଆଡ଼େ କେତୋଟି ମୁହୂର୍ତ୍ତ ନୀରବରେ ଚାହିଁ ଦେଖିଲା । ଶତରୂପାର ଆକାଂକ୍ଷାର ଆକୁଳତା— ଯେପରି ସେହି ମାଂସର ତରଙ୍ଗରେ ତରଙ୍ଗାୟିତ ହେଉଥିଲା । ମାତ୍ର ଆଦମ ଶତରୂପା ଆଡ଼େ ଥରେ ମୁହଁ ଉଠାଇ ସୁଦ୍ଧା ଚାହିଁଲା ନାହିଁ ।

ଧ୍ୱଂସ ପାଇଁ ନିତ୍ୟ ନୂତନ ଅସ୍ତ୍ର ସଂଗ୍ରହରେ ଆଦମର ଆନନ୍ଦ । ସୃଷ୍ଟିର ପିପାସାରେ ଆଦମ କେବେ ପୀଡ଼ିତ ହୋଇ ନାହିଁ ।

ଶତରୂପା ଆଦମ ପାଖରେ ଆସି ବସିଲା । ଆଦମର ଦୃଷ୍ଟି ଆକର୍ଷଣ କରିବା ପାଇଁ ଶତରୂପା କବରୀରୁ କେତୋଟି ରକ୍ତପଲାଶ କାଢ଼ି ତଳେ ଫିଙ୍ଗି ଦେଲା । ଅସତର୍କତାର ଏହି ଅଭିନୟ ମଧ୍ୟରେ ଶତରୂପା ଅତି ଏକାନ୍ତ ଭାବରେ ଆଶା କରୁଥିଲା, ଆଦମ ହାତରୁ ପଥରର ଶସ୍ତ୍ର ଫିଙ୍ଗି—ଶତରୂପାର କବରୀକୁ ପଲାଶ ଦଳରେ ପୁଣି ମଣ୍ଡିତ କରିଦେବ ।

ମାତ୍ର ଆଦମ ସେଆଡ଼େ ଥରେ ସୁଦ୍ଧା ଚାହିଁ ଦେଖିଲା ନାହିଁ । ଶତରୂପା ଆଦମର ଦୃଷ୍ଟି ଆକର୍ଷଣ କରିବା ପାଇଁ ଆଦମର ମାଂସପେଶୀ ଗୁଡ଼ିକ ଉପରେ ଥରେ ହାତ ବୁଲାଇ ନେଲା । ଆଦମ ତଥାପି ଶତରୂପା ପ୍ରତି ଦୃକ୍‌ପାତ ସୁଦ୍ଧା କଲା ନାହିଁ ।

ଶତରୂପା ଅଭିମାନରେ ଆଦମ ପାଖରୁ ଉଠି ଆସିଲା ।

ମାତ୍ର ନାରୀର ଅଭିମାନର ଜ୍ୱାଳା ଆଦମ ସେ ପର୍ଯ୍ୟନ୍ତ ବୁଝି ନ ଥିଲା; ତେଣୁ ଶତରୂପାର ଅଭିମାନ ସୁଦ୍ଧା ବୃଥା ହୋଇଗଲା । ଅଗତ୍ୟା ସେ ପୁଣି ଆଦମ ପାଖକୁ ଫେରି ଆସି, ଏଥର ତା ଦେହ ସ୍ପର୍ଶ କଲା ।

ଶତରୂପା ଅନୁଭବ କଲା—ଆଦମର ଦେହ ପଥର ଠାରୁ ସୁଦ୍ଧା ଆହୁରି କଠିଣ ଓ ବନ୍ଧୁର । ଆଦମ ଯେପରି ପର୍ବତର ପ୍ରସ୍ତର ନିର୍ମିତ—ଅବଚଳିତ ସନ୍ତାନ । ଶତରୂପା ଏଥର ଆଦମର ଦେହ ଉପରେ ନିଜ ଦେହ ଢାଳି ଦେଲା । ମାତ୍ର ଆଦମର ମାଂସପେଶୀ ତଥାପି କୋମଳ ହେଲା ନାହିଁ, ସ୍ନାୟୁ ସ୍ପନ୍ଦିତ ହେଲା ନାହିଁ; ବାହୁ ଶତରୂପାର କଟୀ ବେଷ୍ଟନ କଲା ନାହିଁ ।

—ଆଦମର କ୍ଷୁଧା···କେବଳ ଜଠରର କ୍ଷୁଧା; ହୃଦୟର କ୍ଷୁଧା ଆଦମକୁ କେବେ ଉତ୍ପୀଡ଼ିତ କରିନାହିଁ । ଆଦମ ଅନ୍ୟକୁ କେବଳ ଜୟ କରିଛି ସିନା, ଅନ୍ୟ ପାଇଁ କାମନା ଓ ଆକାଂକ୍ଷାର ଲେଲିହାନ ଶିଖାରେ ସେ ନିଜକୁ କେବେ ଆହୁତି

ଦେଇ ନାହିଁ । କଥାଁରେ ସେ ଅନ୍ୟକୁ ଜଳାଉଛୁ ଯିନା; କିନ୍ତୁ ନିଜେ କେବେ ଜଳ ଜଳ ହୋଇ ଜଳି ନାହିଁ ।

ଆଦମ··· ଏକାନ୍ତ ଆଦମ ।

ଶତରୂପାର ତଥାପି ଧୈର୍ଯ୍ୟଚ୍ୟୁତ ହେଲା ନାହିଁ । ପ୍ରାଣରେ ତାର ସୃଷ୍ଟିର ପିପାସା । ମିଳନର ଛନ୍ଦରେ ଦେହର ଅଣୁ ପରମାଣୁ ତାର ସ୍ପନ୍ଦିତ । ଶତରୂପା ଆଦମର ପ୍ରତୀକ୍ଷାରେ ବସି ରହିଲା ।

କେତେବେଳ ପରେ କ୍ଷୁଧାର ତାଡ଼ନାରେ ଆଦମ ହାତରୁ ପଥରର ଅସ୍ତ୍ରଶସ୍ତ୍ର ଅସ୍ତ୍ର ଫିଙ୍ଗି, ଖାଦ୍ୟର ଅନ୍ୱେଷଣରେ ଆରଣ୍ୟ ପଶୁପରି, ଅରଣ୍ୟ ମଧ୍ୟକୁ ପୁଣି ଧାଇଁଗଲା । କ୍ଷୁଧିତା ଶତରୂପା, ଏଥର ଆଦିମର ଅନୁଧାବନ କଲା.... ।

······ବହୁ ପଥ ଅତିକ୍ରମ କରିବା ପରେ, ଗୋଟିଏ ବିଚିତ୍ର ବୃକ୍ଷ ତଳେ ଆଦମ ହଠାତ ଠିଆ ହୋଇଗଲା । କେଉଁ ବିଚିତ୍ର କୁସୁମର ଆମୋଦର୍ସ, ଏହି ବୃକ୍ଷର ପ୍ରଶାଖାରେ ଅଗଣିତ ଲୋଭନୀୟ ଫଳ ସମ୍ଭାରରେ ପରିଣତ ହୋଇଥିଲା—ତାହା ଆଦମ ବା ଶତରୂପା କେହି ଜାଣି ନ ଥିଲେ । ପ୍ରତ୍ୟେକଟି ଫଳ ଏକ ଅବର୍ଣ୍ଣନୀୟ ବର୍ଣ୍ଣ ସୁଷମାରେ ପରମ ରମଣୀୟ ଓ ଲୋଭନୀୟ ଦିଶୁଥିଲା । ଆଦମ ଲୋଭ ସମ୍ବରଣ କରି ନ ପାରି ବୃକ୍ଷ ତଳୁ ଗୋଟିଏ ଫଳ ଉଠାଇ ନେଲା । ସୃଷ୍ଟିର ପୁଞ୍ଜୀଭୂତ କାମନା ଓ ଆକାଂକ୍ଷା ଯେପରି ଏହି ବିଚିତ୍ର ଫଳର ପ୍ରତି ତନ୍ତୁକୁ ରସାଣିତ କରିଥିଲା । ଆଦମ ସଂସାରର ସୌନ୍ଦର୍ଯ୍ୟ ଏତେ କାଳ ଦେଖି ଆସିଥିଲା ସିନା, ସୃଷ୍ଟିର ଏପରି ବିଚିତ୍ର ସୁଷମା ସମ୍ଭବତଃ କେବେ ଦେଖି ନ ଥିଲା । ଉପଭୋଗ ଓ ଆତ୍ମୋତ୍ସର୍ଗ, ପୁଲକ ଓ ବେଦନା, ଅତି ବିଚିତ୍ର ଭାବରେ ଯେପରି ଏହି ଫଳ ଦେହରେ ଗର୍ଭିତ ହୋଇଥିଲା । ଆଦମ ହିଂସ୍ର, କ୍ଷୁଧିତ ପଶୁପରି ଫଳଟିକୁ ଦାନ୍ତରେ କାମୁଡ଼ି ପକାଇଲା ।

ଏକ ବିଚିତ୍ର ତିକ୍ତ, ମଧୁର ଓ ତୀବ୍ର ଆସ୍ୱାଦନ—ଆଦିମକୁ ହଠାତ୍ ଅବସନ୍ନ କରିଦେଲା । ଆଦିମ ଗ୍ରୀବା ଦେଖିଲା – ପାଖରେ ତାର ଶତରୂପା । ବିଶ୍ୱର ପୁଞ୍ଜୀଭୂତ ସୁଷମା ଯେପରି ଶତରୂପାଠାରେ ରୂପ ପରିଗ୍ରହ କରିଥିଲା । କବରୀରେ ତାର ଶତ ବସନ୍ତର ଆମନ୍ତ୍ରଣ । ଦୁଇ ଆଖିରେ ତାର ଅଗଣିତ ଅକାଂକ୍ଷିତ ମୁହୂର୍ତ୍ତର ମିଳନ ଆକାଂକ୍ଷା, ପ୍ରଶ୍ୱାସରେ ତାର ମଳୟ ବିଳାପ ।

ଅଗଣିତ ବାର ଦେଖା, ପୁରାତନୀ ଶତରୂପାର ଏ ଯେପରି ଏକ ନୂତନ ପରିଚୟ । ଆଦମ ବହୁ ଆଦରରେ, ଅର୍ଦ୍ଧଭୁକ୍ତ ଫଳଟିକୁ ଶତରୂପାର ଦୁଇ ଓଠ ପାଖରେ ଉଠାଇ ଧରିଲା ।

ମାତ୍ର ଯେଉଁ ଶତରୂପା ବାଘ, ଅନୁଗତ ପଶୁପରି ଆଦମର ଅନୁଧାବନ କରି ଆସିଥିଲା କ'ଣ ହେଲା କେଜାଣି, ବ୍ୟାଧ-ତନ୍ତ୍ରା, ହରିଣୀ ପରି ସେ ମୁହୂର୍ତ୍ତିକ ଭିତରେ ଅରଣ୍ୟ ମଧ୍ୟକୁ ଧାଇଁ କେଉଁଆଡ଼େ ଅଦୃଶ୍ୟ ହୋଇଗଲା ।

....କାହିଁ ଶତରୂପା ?

ମୁହୂର୍ତ୍ତିକ ମଧ୍ୟରେ ଅରଣ୍ୟର ଶ୍ୟାମଳିମା, ଶ୍ୟାମାଙ୍ଗୀ ଶତରୂପାର ଉଜ୍ଜ୍ୱଳ ଶ୍ୟାମଳିମାରେ ପରମ ଲୋଭନୀୟ ହୋଇ ଉଠିଲା । ପଥପ୍ରାନ୍ତର କୁସୁମ ସମ୍ଭାର, ସ୍ମରଣ କରାଇଦେଲା ଶତରୂପାର କୁସୁମିତ କବରୀ ।

'ଶତରୂପା, ଶତରୂପା' ଚିତ୍କାର କରି, ଆଦମ ଶତରୂପାର ଅନୁଧାବନ କଲା ।

କିନ୍ତୁ କାହିଁ ଶତରୂପା ? ?

କେତେ ଦୁସ୍ତର ଗିରିମାଳା, କେତେ ବନ୍ଧୁର ଉପତ୍ୟକା, କେତେ କଣ୍ଟକାକୀର୍ଣ୍ଣ ବନପଥ, ଶତରୂପା ପାଇଁ ଆଦମର ଆକୁଳ ଆହ୍ୱାନରେ ପ୍ରତିଧ୍ୱନିତ ହେଲା । ତଥାପି ଶତରୂପାର ସନ୍ଧାନ ମିଳିଲା'ନାହିଁ ।

ବହୁଦିନ ପରେ .... ।

ଅବଶେଷରେ ଆଦମ ଶତରୂପାର ସନ୍ଧାନ ପାଇଲା । ଶତରୂପା ସବୁଦିନ ପରି ଗୋଟିଏ ଗିରି ନିର୍ଝରିଣୀର ଜଳ-ମୁକୁରକୁ ଚାହିଁ କେଶ ରଚନା କରୁଥିଲା । ନିର୍ଝରିଣୀର ଜଳଧାରା ଶତରୂପାର ଦୁଇପାଦ ବେଷ୍ଟନ କରି, ସୃଷ୍ଟି କରିଥିଲା ଯେପରି ଆତ୍ମନିବେଦନର ପ୍ରାଣ ସଙ୍ଗୀତ ।

ଆଦମର ଅହ୍ୱାନ ଶୁଣି ଶତରୂପା ଆଦମ ଆଡ଼େ ଥରେ ଚାହିଁ, ପୁଣି ଆତ୍ମ—ବିସ୍ମୃତ ଭାବରେ କେଶ ରଚନାରେ ମନୋନିବେଶ କଲା । ଶତରୂପାର ଲୋଭନୀୟ ଦେହଶ୍ରୀ, ମୃଗଚର୍ମର ପରିପାଟୀ, ଆଦମକୁ ଉତ୍ତେଜିତ କରିଦେଲା । ଆଦମର ଇଚ୍ଛା ହେଉଥିଲା ଶତରୂପାକୁ ଦୁଇବାହୁରେ ତୋଳିଧରି, ଅରଣ୍ୟ ମଧ୍ୟକୁ ପଳାଇବା ପାଇଁ । ମାତ୍ର ଶତରୂପା କିପରି ତାକୁ ସମ୍ମୋହିତ କରି ଦେଇଥିଲା । ଶତରୂପା ଏକ ଲେଲିହାନ ଅଗ୍ନିଶିଖା ପରି ତାର ସମସ୍ତ ପୌରୁଷକୁ ଯେପରି ଗ୍ରାସ କରି ଯାଇଥିଲା ।

ଆଦମ ଭୀରୁ, ଜଡ଼ିତ କଣ୍ଠରେ ଡାକିଲା ଶତରୂପା । ମାତ୍ର ଶତରୂପା ଆଦମ ଆଡ଼େ ଥରେ ଯେପରି ପୁଣି ଚାହିଁଲା ନାହିଁ ।

ତା ପରଦିନ ପୁଣି ଆସିଲା ଆଦମ । ଦୁଇ ହାତରେ ତା'ର ପୂର୍ଣ୍ଣ ପୁଟରେ ବହୁ ସୁପକ୍ୱ ଫଳ ଓ ନାନା ବିଚିତ୍ର କୁସୁମର ଶ୍ରଦ୍ଧାଞ୍ଜଳି । ସଦ୍ୟସ୍ନାତା ଶତରୂପା ନିର୍ଝରିଣୀର ଉପଳବିକ୍ଷତ ଶଯ୍ୟା ଉପରେ ବସି, ଜଳସିକ୍ତ କୁନ୍ତଳ ମେଲାଇ ଦେଇଥିଲା । କାମନାର

ମାୟାଜାଲ ପରି । ଆଦମ ଶତରୂପାର ପାଦତଳେ—ପର୍ଣ୍ଣପୁଟର ଉପହାର ନିବେଦନ କରି, ବିହ୍ୱଳ କଣ୍ଠରେ ଡାକିଲା....ଶତରୂପା !

ଶତରୂପାର ଇଚ୍ଛା ହେଉଥିଲା । ଦୁଇ ଆଖି ଖୋଲି, ଆଦମକୁ ଥରେ ଚାହିଁବା ପାଇଁ । ମାତ୍ର ଆଜି କ'ଣ ହେଲା କେଜାଣି— ଆଦମର ଦେହ ଶତସୂର୍ଯ୍ୟର ପୁଞ୍ଜୀଭୂତ ଦୀପ୍ତି ପରି, ଶତରୂପାର ଦୁଇ ଆଖିକୁ ଅନ୍ଧ କରିଦେଲା । ଶତରୂପା ଆନନ୍ଦ ଦୃଷ୍ଟି ଉପଲ-ଶଯ୍ୟା ଉପରୁ ଉଠାଇ ପାରିଲା ନାହିଁ ।

ଆଦମ ଗୋଟିଏ ଦୀର୍ଘଶ୍ୱାସ ପକାଇ ଫେରିଗଲା.... । ତା ପରଦିନ ପୁଣି ଆସିଲା ଆଦମ—ମୃଗଚର୍ମର କୋମଳ ଅଙ୍ଗାଭରଣ ଧରି.... ।

ଆଦମ କହିଲା.... "ଆସ ଶତରୂପା । ପଲ୍ଲବର ମେଖଳା ଫିଙ୍ଗି, ତୁମକୁ ପିନ୍ଧାଇ ଦେବି ମୃଗ ଚର୍ମର ଏହି କୋମଳ ଚିତ୍ରିତ ଅଙ୍ଗାଭରଣ ।"

ଶତରୂପା ଉତ୍ତରରେ କିଛି କହି ପାରିଲା ନାହିଁ । କିନ୍ତୁ ତା'ର ହଠାତ୍ ଯେପରି ଜଡ଼ ଓ ଅଥର୍ବ ହୋଇଗଲା । ଆଦମକୁ ଦେଖି ଶତରୂପା ତା'ର ନଗ୍ନ ଦେହ କେଉଁଠି ଲୁଚାଇବ—ଭାବି ପାରିଲା ନାହିଁ । ଅଗତ୍ୟା ଶତରୂପା ଦୁଇ ବର୍ତ୍ତୁଳ ବାହୁ, ବକ୍ଷଯୁଗ୍ମ ଉପରେ ଛନ୍ଦିଆଣି, ଆଦମର ଜ୍ୱାଳାମୟ ଦୃଷ୍ଟିରୁ, ଆତ୍ମରକ୍ଷା କଲା ।

ଆଦମର ସଂଯତ୍ନ—ସଂଗୃହୀତ ଉପହାର ତଳେ ପଡ଼ି ରହିଲା । ଆଦମ ପୁଣି ବନପଥରେ ଶେଷ—ବସନ୍ତର ଦୀର୍ଘଶ୍ୱାସ ପରି ଧୀରେ ଧୀରେ ଅଦୃଶ୍ୟ ହୋଇଗଲା ।

....ତା' ପରଦିନ ପୁଣି ଆସିଲା ଆଦମ........ସମୁଦ୍ର ଗର୍ଭରୁ ପ୍ରବାଳ ଓ ମଣି-ମୁକ୍ତାର ମାଳା ସଂଗ୍ରହ କରି ।

ଏଥର ଆଦମ ଆତ୍ମ ସଂବରଣ କରି ନ ପାରି, ଶତରୂପାର ଗଳାରେ ପିନ୍ଧାଇ ଦେଲା ରକ୍ତ ପ୍ରବାଳର ମାଳା ।

........ନତଭ୍ରୂ, କୁଣ୍ଠିତା ଶତରୂପାର ଦେହ ସ୍ପର୍ଶ କରି ଆଦମ ବିସ୍ମିତ ହେଲା........ଏତେ କୋମଳ । ପୁଣି ଏତେ ନିଷ୍ପ୍ରାଣ ! !

ଶତରୂପା ଯେପରି ପାଷାଣୀ ମୂର୍ତ୍ତି । ଆଦମକୁ ସେ ପ୍ରତିସ୍ପର୍ଶ ସୁଦ୍ଧା ଦେଲା ନାହିଁ ।

ଆଦମ ଗୋଟିଏ ଦୀର୍ଘଶ୍ୱାସ ପକାଇ ଫେରି ଯାଉଥିଲା ବେଳେ—ଶତରୂପା ଭାବୁଥିଲା, ଆଦିମର ଦୁଇହାତ ଧରି ତାକୁ ଅଟକାଇବା ପାଇଁ ।

ମାତ୍ର ଅଭିମାନ ଓ ଲଜ୍ଜାର ସ୍ୱର୍ଣ୍ଣସିଂହାସନରୁ ଓହ୍ଲାଇ, ଶତରୂପା ତଳକୁ ଆସିଲା ବେଳକୁ ଆଦିମ ଅଦୃଶ୍ୟ ହୋଇ ଯାଇଥିଲା ।

ତା' ପରଦିନ ପୁଣି ଆସିଲା ଆଦିମ ।

ନିଃସଂବଳ ଆଦମ, ବ୍ୟଗ୍ର ଅଞ୍ଜଳିରେ ତା'ର କୌଣସି ଉପହାରର ନୂତନ ନିବେଦନ ନ ଥିଲା । ଆଜି ଏକାନ୍ତ ରିକ୍ତପାଣି ଆସିଥିଲା ଆଦମ । ସମ୍ଭବତଃ ବିଦଗ୍‌ଧ ହୃଦୟର ବେଦନା—ଛଡ଼ା, ଆଜି ତା'ର ଅନ୍ୟ କୌଣସି ଉପହାର ନ ଥିଲା ।

ଶତରୂପା ଆଦମ ଆଡ଼େ ଥରେ ଦୁଇ ଆଖି ଟେକି ଚାହିଁଲା । ସେ ଚାହିଁବାରେ କ'ଣ ଥିଲା । ଆଦମ ଜାଣି ନ ଥିଲା । ମାତ୍ର ଶସ୍ତ୍ରାହତ ପଶୁର ଛିନ୍ନ ପ୍ରତ୍ୟଙ୍ଗ, ରକ୍ତସ୍ରାବ ମଧ୍ୟରେ ପ୍ରକମ୍ପିତ ହେଲାପରି, ପାଷାଣପରି କଠିଣ ମାଂସପେଶୀ ତଳେ, ଆଦମର ଅନ୍ତଃସ୍ଥଳ ବିକ୍ଷୁବ୍‌ଧ ଓ ପ୍ରକମ୍ପିତ ହୋଇ ଉଠିଲା ।

ଆଦମ କିଛି ବୁଝି ପାରିଲା ନାହିଁ । ଦେହର ତନ୍ତୁରେ ତନ୍ତୁରେ ଏକ ଶିହରଣ । ଶିରାରେ ଶିରାରେ ଏକ ବେଦନା ।

ଏ କଣ କେବଳ ଜାନ୍ତବ ମିଳନର ତୁଚ୍ଛ ଦୈହିକ କାମନା ?

ଆଦମର ଦୁଇ ଆଖିରୁ । ଦୁଇଧାର ଲୋତକ ତା'ର ପାଷାଣ ଗଣ୍ଡ ଉପରେ ବୋହି ଆସିଲା । ଆଦମ ଆତଙ୍କିତ ହୋଇ ପଡ଼ିଲା । ତା'ର ଦୁଇ ଆଖିରୁ ଦୁଇ ଜଳଧାରା, ଏହି ଗିରି ନିର୍ଝରିଣୀ ପରି ବୋହି ଆସିଲା କୁଆଡ଼ୁ ଓ କାହିଁକି ! ଏକ ପୁଲକ ! ଏକ ବେଦନା ! ନିଜକୁ ହଜାଇ ଦେବା ପାଇଁ ଏକ ଆକାଂକ୍ଷା !

ଆଦମର ପରବର୍ତ୍ତୀ ବଂଶଧରମାନେ ଏ ଅନୁଭୂତିକୁ ଅବଶ୍ୟ ପ୍ରେମ ନାମରେ ଅଭିହିତ କରିଥିଲେ । ମାତ୍ର ଆଦମର ଆଦିମ ଚକ୍ଷୁ ଓ ଅନୁଭୂତିରେ ଏ ବିଚିତ୍ର ଅନୁଭୂତି ଆକାଶର ନୀଳିମା, ଅରଣ୍ୟର ଶ୍ୟାମଳିମା ପରି ଏକାନ୍ତ ସ୍ୱର୍ଗୀୟ ଓ ରହସ୍ୟାବୃତ ଲାଗିଥିଲା ।

ଆଦମ ପୁଣି ଫେରି ଆସୁଥିଲା; ମାତ୍ର ଏଥର ଶତରୂପା ତାହାର ଦୁଇହାତ ଧରି, ତାକୁ ନିଜର ଉନ୍ମୁକ୍ତ ବକ୍ଷ ଉପରକୁ ଟାଣି ଆଣିଲା ।

ଶତରୂପାର ଦୁଇ ଆଖିରେ ମଧ୍ୟ ଅଶ୍ରୁର ନିର୍ଝରିଣୀ ।



# ବିଦାୟ

**ମନୋଜ ଦାସ**

ଅନେକ ଦିନ ପୂର୍ବର କଥା—ଆଉ ଓ ରୋମାଞ୍ଚମୟ ସେଇ ସବୁ ଦିନର ସ୍ମୃତି ଅବଶ ମନ ଭିତରେ ଗବ୍ ଗବ୍ କରୁଥିଲା; ଫୁଟନ୍ତ ଶତଧାର୍ଣ୍ଣି ସମ୍ମୁଖ ବାମ୍ପ ଯିମିତି ଡାଙ୍କୁଣି ଠେଲପେଲ ବାହାରିବାକୁ ଚାହେଁ—ମହେନ୍ଦ୍ର ମିଶ୍ରଙ୍କ ମନର ଗହନ ଅତଳରେ ଭିଡ଼ା ହୋଇଥିବା ଗୋଟିଏ ଆବରଣର କେତୋଟି ସ୍କ୍ରୁ ହଠାତ୍ ଢିଲା ହୋଇ ତହିଁ ତଳୁ ନାନାଦି ଅଧୀର, ମଧୁର, ବଧିର ମୁହୂର୍ତ୍ତର ଅନ୍ତରଙ୍ଗ ମୁହଁମାନ ଉଙ୍କି ମାରୁଥିଲେ । କରୁଥିଲେ କେଉଁଟା ଅଭିମାନ, କେଉଁଟା, ସମ୍ଭ୍ରମ, କେଉଁଟା ଉତ୍ସାତୁରତା ସହକାରେ, ଆଜିର ଅବସରପ୍ରାପ୍ତ ଜିଲ୍ଲା ମାଜିଷ୍ଟ୍ରେଟ୍ ମହେନ୍ଦ୍ର ମିଶ୍ର ସେମାନଙ୍କୁ ଚିହ୍ନି ପାରୁଛନ୍ତି କି ନାହିଁ ଦେଖିବାକୁ ।

କ୍ଷଣିଏ ପାନ ଚର୍ବଣ କରୁଁ କରୁଁ ଉଦାର ମନରେ ମହେନ୍ଦ୍ର ବାବୁ ଚିହ୍ନୁଥିଲେ—ଚଳ୍ପମୟ, ଚପଳ ବାଲ୍ୟ କୈଶୋର ଓ ତତ୍‌ପରବର୍ତ୍ତୀ ପାଲିଶ୍ କରା ଫିଟ୍-ଫାଟ୍ ଅଚଳାୟତନ ଗୃହସ୍ଥ-ଜୀବନ ଭିତରର ବ୍ୟବଧାନ ହେଲା ସେଇ ଆବରଣଟି ।

ବହୁଦିନ ପୂର୍ବରେ ଦିନକର 'ଦିନ ଦଶଟା' ରେ ପ୍ରଥମଥର ପାଇଁ ନେକ୍‌ଟାଇକୁ ଗଲାରେ ଭିଡ଼ୁ ଭିଡ଼ୁ, ସୁଡଙ୍ଗ ପଥରେ ଆହ୍ଲାଦୀନକୁ ପ୍ରଦୀପର ସନ୍ଧାନରେ ପଠାଇ ଯାଦୁକର ପ୍ରଚଣ୍ଡ ପଥରଟିଏ ଚାପି ଦେଇଥିଲା ଭଳି, ସେ ବି ହଠାତ୍ ଏଇ ଆବରଣଟି ଥୋଇ ଦେଇଥିଲେ । ଆଜିର ଏଇ ମେଘ-ମେଦୁର ଅବସରରେ ନିର୍ଜନ ବାରନ୍ଦାର ଇଜିଚେୟାର୍ ଉପରେ ଚଳପଡ଼ ମହେନ୍ଦ୍ର ମିଶ୍ର ସେଇ ଆବରଣ ସେପାଖର ଆଗନ୍ତୁକମାନଙ୍କୁ ସପ୍ରେମ ସ୍ୱାଗତ ଜଣାଇଲେ ।

ପ୍ରଥମେ, ଉଙ୍କି ମାରି, ସଫେଦ୍ ଜଣ ହାଲକ ଚହଟାଇ, ନରମ ପାହୁଲ ଥୋଇ ଥୋଇ ସନ୍ତର୍ପଣରେ ଯିଏ ବାହାରି ଆସିଲା—ମହେନ୍ଦ୍ର ବାବୁ ତାକୁ ଦେଖି ବିସ୍ମିତ ହେଲେ । ସେ ହେଲା, ତାଙ୍କ ପିଲାଦିନର ଦୁଗ୍ଧପାନ ଓ ମିଷ୍ଟାସ୍ୱାଦନ ରୂପକ ଦୁଇଟି ପ୍ରିୟ କର୍ମରେ ଏକମାତ୍ର ପ୍ରତିଦ୍ୱନ୍ଦ୍ୱୀ, ତାଙ୍କର ପରଲୋକଗତା ମାତାଙ୍କର ଏକାନ୍ତ ନିଜସ୍ୱ ଧୋବ ଧାଉଳିଆ ବିଲେଇଟି ।

ହିଁ, ସେସବୁ ଦିନ ଥିଲା ସାରନ୍ଧ୍ର ଓ ସେପ୍ଟାମ୍ବର ଦିନ ....

ଚଟଶାଳୀର ଘଟୋତ୍କଚ-ତୁଲ୍ୟ ଦକ୍ଷିଣୀ ଅଧ୍ୟାପକଙ୍କ କବଳରେ ଓଲଟପାଲଟ ହନ୍ତସନ୍ତ ହେବା ପରେ, ଗୋଧୂଳିର ସ୍ନେହାଳୁ ସ୍ପର୍ଶ ଭିତରେ ଚଟଶାଳୀ ଫେରନ୍ତା ଶ୍ରୀମାନ୍ ମହେନ୍ଦ୍ର ହଠାତ୍ କେଉଁଦିନ ବନମାଳତୀ ବନ ବାଡ଼ ପଛପଟର ମୁମୂର୍ଷୁ ଦେବଦାରୁ ଅଗରେ କସ୍ମିସ୍ଥିତ୍ ବେକାର ବେତାଳର ଅସ୍ପଷ୍ଟ କଲନାକର ତର୍ଜମା ନିର୍ଦ୍ଦେଶ କରୁଥିଲେ ତ, କେଉଁଦିନ ଅବା ସବ୍ୟସାଚୀ ଅର୍ଜୁନ ରୂପେ ଗୋଟିଏ ପଙ୍ଗୁ ଚୌକିକୁ ଦ୍ରୋପଦୀ ବନାଇ ତାଙ୍କୁ ଭିଡ଼ି ଓଟାରି ନେଇ ଯାଉଁ ଯାଉଁ ଅଜସ୍ର ଗୃକୁଣ୍ଡା ଗଛରୂପକ ରାଜନ୍ୟବର୍ଗଙ୍କ ସହ ନିରବଚ୍ଛିନ୍ନ ଯୁଦ୍ଧ କରି ଯାଉଥିଲେ । କଦବା ସେ ବନୁଥିଲେ ପର୍ଶୁରାମ ଏବଂ ସମଗ୍ର କ୍ଷତ୍ରିୟ-ଗୋଷ୍ଠୀର ପ୍ରତିଭୂ ରୂପେ ସେଇ ବଳେଇଟିକୁ ଗ୍ରହଣ କରି ଉପରମହଲରୁ ତଳମହଲ, ପଡ଼ାଘରୁ ରୋଷେଇଘରଯାଏ ସନ୍ତ୍ରସ୍ତ ଜୀବଟିର ଅନୁଧାବନ କରି କରି ଶେଷକୁ ପ୍ରବଞ୍ଚନାର ଆଶ୍ରୟ ନେଇ ଶୁଖୁଆ ସାହାଯ୍ୟରେ ତାକୁ ଧରୁଥିଲେ ଏବଂ ସଂଗୃହୀତ ଅମିତାକ୍ଷର ଭକ୍ତ ସହକାରେ କ୍ଷତ୍ରିୟ-ନିଧନ ଅନୁଷ୍ଠାନର ପ୍ରତୀକ ରୂପେ ତାର ଫୁଲନ୍ତ ଜଣ ହଲକର କିୟଦଂଶ କର୍ତ୍ତନ କରୁଥିଲେ । ଷଷ୍ଠ ଅବତାରଙ୍କ କବଳରୁ ମୁକ୍ତିପାଇ ପ୍ରାଣମୂର୍ଚ୍ଛା ଦୌଡ଼ି ପଳାଉଥିଲା କ୍ଷତ୍ରିୟ-ଚୂଡ଼ାମଣି ବଳେଇ । ତାର ଫାଳୁକା ଫାଳୁକା ଟିକି ଟିକି ପାଦର ଛୁଟନ୍ତ ଅପରୂପ ସୁସ୍ପଷ୍ଟମାଣ ଦୃଶ୍ୟ ଆଜି ମହେନ୍ଦ୍ର ମିଶ୍ରଙ୍କ ମନ୍ଥର ମନର ପଟ୍ଟଭୂମିରେ ଗଭୀର ରେଖାଟିଏ ଟାଣିଦେଲା ।

ତାଙ୍କ ବୁକୁ କଛୁ ଜୋରରେ ସ୍ପନ୍ଦିତ ହୋଇ ଉଠିଲା । ସେ ଇଜି ଚେୟାରରେ ଭଙ୍ଗୀ ପରିବର୍ତ୍ତନ କରି ବସିଲେ ।

ପୁଣି ଫେରି ଆସିଲା ବଳେଇ—ତାଙ୍କର ହୃତ୍ସ୍ପନ୍ଦନ କମିଗଲା ଏଥର । କାରଣ ବଳେଇ ନ ଫେରିବାଯାଏ ବୋଉ ବିମର୍ଷ ହୋଇ ରହୁଥିଲେ । ରାତି ନଅଟା ସରିକି ଯେତେବେଳେ ଅଗ୍ନିକ ସ୍ୱରରେ ରୋଷେଇଘରର ଝର୍କିଆ କାନ୍ଥ ଉପରୁ ଧପ୍‌କିନା ଖସିଆସି ଦୂର୍ତ୍ତର ମାଉଁ ଧୂର୍ତ୍ତର ମାଉଁ କରି ଲମ୍ବର ବିଜୟ ବାନା ଉତ୍ତୋଳନ କରି ବଳେଇଟି ବୋଉ ଦେହରେ ଲେପ୍‌ଟି ଯାଉଥିଲା, ବୋଉ ସେତେବେଳେ ଆଶ୍ୱସ୍ତିର ନିଃଶ୍ୱାସ ଛାଡ଼ୁଥିଲା । ବାଁ ପଟ ଭ୍ରୂର ଉପରୁ ଉପରେ ଯେଉଁ କ୍ଷୀଣ ରେଖାଟି ବୋଉର ଶାନ୍ତ ସୁକୋମଳ ମୁହଁ ଉପରେ ବିଷର୍ଣ୍ଣତାର ମୋହର ମାରି ଦେଉଥିଲା, ବଳେଇ ଆସିଗଲେ ସେ ମୋହରଟି ମିଳେଇ ଯାଉଥିଲା ।

ମହେନ୍ଦ୍ର ମିଶ୍ର ସଳଖି ବସିଲେ । ଆଜି କାହିଁକି ବଳେଇ କଥା ଏତେ ମନେ ପଡ଼ୁଛି ? ମହାଶୂନ୍ୟ ଭିତରକୁ ଅନାଇ ଅନାଇ ସେ କାରଣ ଖୋଜୁଥିଲେ । ଏଇ ପୃଥିବୀ ଉପର ଦେଇ ବହମାନ ଅମାପ ଅତୀତର ଅଜସ୍ର ତମାମୀ ଫାଇଲ୍ ଶୂନ୍ୟ ଭିତରେ

ଷସମାନ ହୋଇ ରହିଛି । ସେଇଠି ସେ ଆବିଷ୍କାର କଲେ, ସେଇ ବିଲେଇର ଧାବମାନ ଆକୁଳ ପାଦର କ୍ଳାନ୍ତ ଗତି ସହ ତାଙ୍କ ଜୀବନର ପ୍ରଚ୍ଛନ୍ନ ସାମଞ୍ଜସ୍ୟ ।

ପ୍ରଥମଥର ପାଇଁ ନେକ୍‌ଟାଇରେ ଗଣ୍ଠି ଆଣ୍ଠିବା ଦିନଠାରୁ ଆଜି ଶେଷଥର ପାଇଁ ତାକୁ ଖୋଲି ଦେବା ଭିତରେ ସମୟର ଏକ ଦୁଃସ୍ୱପ୍ନ ସ୍ନାତ ଦୀର୍ଘତା ବ୍ୟାପୀ ସେ ଖାଲି କାକୁସ୍ଥ ହୋଇ ଧାଇଁଛନ୍ତି । ଗନ୍ତାମ ମାଳର ବିମଳ ସୂର୍ଯ୍ୟାସ୍ତ ତାଙ୍କୁ କ୍ଷଣେ ଅଟକାଇବାକୁ ଚାହିଁଛି (ସପ୍ତମ ଶ୍ରେଣୀରେ ସେ ପାହାଡ଼ ଓ ଝରଣାର ଏକ ଦୃଶ୍ୟ ଆଙ୍କି ପ୍ରଥମ ହୋଇଥିଲେ ) : କିନ୍ତୁ ସେ ପଳାୟନ କରିଛନ୍ତି—ନିବିଡ଼ ଅରଣ୍ୟଘନ କୋଳ ପୃଷ୍ଠର ଏକ ନିର୍ଜନ ଝରଣା ତାର ଛଳ ଛଳ ସଙ୍ଗୀତକୁ ଆକଣ୍ଠ ପିଇନେବା ପାଇଁ ମିନତି କରିଛି (ନବମ ଶ୍ରେଣୀରେ ବିଦ୍ୟାଳୟର ବାର୍ଷିକ ନାଟକରେ ପାଗଳ ଭୂମିକାରେ ଗୀତ ବୋଲି ସେ ରୌପ୍ୟ ପଦକ ପାଇଥିଲେ—ଯଦିଓ ପଣ୍ଡିତ ପୁଣ୍ଡରୀକାକ୍ଷ ପଣ୍ଡା ସେ କଥା ଘୋଷଣା କରିବାକୁ ଯାଇ ଦୁଇ ଦୁଇଥର 'ରୌପ୍ୟ ମୋଦକ' ବୋଲି ଭୁଲ କହିବା ଫଳରେ ଶ୍ରୋତୃମଣ୍ଡଳୀଙ୍କ ହାସ୍ୟରୋଳରେ ତାଙ୍କ ଗୌରବ ବ୍ୟାହତ ହୋଇଥିଲା )—କିନ୍ତୁ ସେ ପଳାୟନ କରିଛନ୍ତି । ଏକଦା ନୀଳାମ୍ବୁ ଚିଲିକା ବକ୍ଷରେ ନୌକା-ବିହାର କରୁ କରୁ ସେ ଏକ ମରାଳମାଳା ଆଡ଼କୁ ଅନାଇ ଆତ୍ମହରା ହୋଇ ପଡ଼ିଥିବା ଅବସ୍ଥାରେ ସହଯାତ୍ରୀ ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ବନ୍ଧୁକ ତୋଳି ନିମିଷକେ ଯୋଡ଼ାଏ ମରାଳ ଖସାଇ 'ମାଳା'ଟିକୁ ଛିଡ଼ାଇ ପକାଇ ଥିଲେ । ଅଦୂରର ପାହାଚ ପାହାଚ ପାହାଡ଼ ଭିତରେ ଗୁଳିର ପ୍ରତିଧ୍ୱନି ଓ ଏସ୍: ପି: ଙ୍କ ସ୍ଫୁର୍ତ୍ତିମନ୍ତ ନିର୍ଘୋଷରେ ମହେନ୍ଦ୍ର ମିଶ୍ରଙ୍କ ମନ ସେଇ ସ୍ୱପ୍ନମୟ ରାଜ୍ୟରୁ ପୁଚ୍ଛଟେକି ଉଆଁ ମାରି ମୁହୂର୍ତ୍ତିକେ ଯାଇ ହାଜର ହୋଇ-ଥିଲା ବାଲୁଗାଁ ଡାକବଙ୍ଗଳାର ପଶ୍ଚାତ୍ ପ୍ରକୋଷ୍ଠରେ—ଯେଉଁଠି ଯୋଡ଼ାଏ ବବୁର୍ଚି ଗରମ ମସଲା, ଲଙ୍କା ବାଟିଚୁଟି ହାତ ଟେକି ବସି ରହିଥିଲେ ।

ଜୀବନ ବ୍ୟାପି ସେ ଛୁଟିଛନ୍ତି—ସେ ଛୁଟନ୍ କେବଳ ଭୌଗୋଳିକ ନୁହେଁ, ବହୁବିଧ ମାନସିକ । ନିଜସ୍ୱ ଏଇ ଛୁଟନ୍ ସହିତ ନିଜର ଛାୟାଶ୍ରିତ ସଭିଙ୍କୁ ସେ ଛୁଟାଇବାକୁ ଚାହିଁଛନ୍ତି; କିନ୍ତୁ ପ୍ରଥମ ପର୍ବରେହିଁ ଟଳିପଡ଼ିଛି ବୋଉ । ସେତେବେଳେ ସେ ସବ୍‌ଡେପୁଟୀ ଅବିବାହିତ । ପିତା ଗତ ହୋଇଥିଲେ ଅଜ୍ଞାନରୁ । ଅଫିସର ମହଲ ଭିତରକୁ ପ୍ରଥମ ପ୍ରବେଶର ଶିହରଣ, ଉତ୍କଣ୍ଠା ଓ ଗୌରବବୋଧର ବିହ୍ୱଳିଆ ଦୃଷ୍ଟି ଭିତର ଦେଇ ବୋଉର ସେଇ ବିପର୍ଣ୍ଣ ଅବସାନକୁ ଅନୁଭବ କରିବାକୁ ସେ ସମୟ ପାଇ ନାହାନ୍ତି । ଅଳ୍ପଦିନ ଭିତରେ ଶୂନ୍ୟସ୍ଥାନ ପୂରଣ ହୋଇ ଆହୁରି ବହୁତ କିଛି ଅଧିକ ମିଳିଯାଇଛି । ସେ ବିଭା ହୋଇଛନ୍ତି ଜଣେ ଅବସର ପ୍ରାପ୍ତ ହାକିମଙ୍କ ଦୁହିତାକୁ, ଯେ କି ଛୁଟନ୍ ଦେବା ପାଇଁ ମାତୃଗର୍ଭରୁହିଁ ଅଭିପ୍ରେତା । ଅତଏବ ସେ ଦିଗରୁ ସେ 'ଫର୍‌ଚୁନେଟ୍ ।'

ବୋଉର ସ୍ତବ୍ଧ ମନ ଭିତରେ ଗ୍ଲୁଆପାତ କରିବା ମାତ୍ରେ, ପୁଣି ସନ୍ତର୍ପଣରେ ପାହୁଲ ପକାଇ ସେଇ ବଲେଇଟି ମାଉଁ ଆସୁଛି । ତାର ଓଜନ ନାହିଁ । ତାକୁ ଠେଲି ଦେଇ ହେବ ନାହିଁ । ତୁଳାଭଳି ହାଲୁକା ଚେହେରା, ତୁଳାଭଳି ମୁଲାୟମ୍ ମ୍ୟାଉଁ । ମହେନ୍ଦ୍ର ମିଶ୍ର ବୁଦ୍ଧିମାନ ଲୋକ । ସେ ବୁଝିଲେ ବଲେଇ ଆଜି ଆସିବଇ । ସୁଦୀର୍ଘ ଧାଁ-ଧପଡ଼ ଶେଷରେ ସେ ଯେମିତ ଆଜି ଅବସର ନେଇ ବସିଛନ୍ତି, ସେମିତି ତାଙ୍କ ଅତ୍ୟାଗ୍ରହରେ ସାରାଦିନ ଆତ୍ମଗୋପନ କରି ଶେଷରେ ନିସ୍ତବ୍ଧ ରାତିରେ ଆସି ବୋଉ ପାଖରେ ଘୁଡ଼ୁରୁ ଘୁଡ଼ୁରୁ ହେଉଥିଲା ନିର୍ଭୟ ବଲେଇ ।

ବୋଉ ଓ ବଲେଇ........

ଏମାନଙ୍କ ଅନ୍ତରଙ୍ଗତାର ଅଖ୍ୟାତ ଚେନାଏ ଇତିହାସ ଥିଲା । ବୋଉ ବଧୂ ହୋଇ ଆସିଥିଲା ଦୁଇକୋଶ ଦୂରରୁ । ସେ ଆସିବାର ଅଳ୍ପଦିନ ପରେ ହଠାତ୍ ମହାମାରୀରେ ତା'ର ବାପ ମା ମରିଗଲେ । ବୋଉ ସେତେବେଳେ ନୂଆ କନିଆ । ଖବର ପାଇଲା ଯାହା ଥରେ ଶେଷଥର ପାଇଁ ଜନ୍ମଦାତା ଜନନୀଙ୍କୁ ଦେଖିଆନ୍ତା । କିନ୍ତୁ ତା' ମନର ବେଦନା ବୁଝି ତାକୁ ନେବା ପାଇଁ ଉଦ୍ୟମ କଲାଭଳି ମମତାମୟ ଆତ୍ମୀୟ କେହି ନଥିଲେ । ସେମାନେ କେବଳ ସାମାନ୍ୟ ସମ୍ପତ୍ତିକ ଆତ୍ମସାତ୍ କରିବା-ପାଏ ଆତ୍ମୀୟ ରହିଥିଲେ । କିଛିଦିନ ଉତ୍ତାରୁ ଘରେ ନିଆଁ ଲାଗି ଘରଟି ଭସ୍ମସାତ୍ ହୋଇ ଯାଇଥିଲା ।

ସେତେବେଳର ଅସହାୟ ବଧୂ ଅନ୍ଧାର ରୋଷେଇ ଘରେ ଆତ୍ମଗୋପନ କରି କାନ୍ଦେ । ଦେହର ଝାଳ ଆଉ ଆଖିର ଜଳ ଭିତରେ ଫରକ ବାରିବାର ଅଧିକାର ଶାଶୁଘରେ ତା'ର ନଥିଲା । ବାପ-ମା ମରିବାର ସାତଦିନ ପରେ ଦିନେ ରୋଷେଇ ଘରର ଝର୍କିଆ କାନ୍ଥ ଉପରେ ଧୂଳବଡ଼ ପଶଚତ ଗୋଟିଏ 'ମ୍ୟାଉଁ' ଡାକ ଶୁଣି ବୋଉ ଚମକି ପଡ଼ିଥିଲା । ତା'ର ବାପଘର ବଲେଇ । ସମ୍ପତ୍ତିକ ସିନା ସଭିଏଁ ନେଇଗଲେ, ବିଚରା ବଲେଇଟିକୁ କେହି ଆଦର କରି ନାହାନ୍ତି । ବଲେଇ ସହଜରେ ଘରଛାଡ଼ି ଯାଏ ନାହିଁ, ସାତଦିନ କାଳ ହତଭମ୍ବ ହୋଇ କାଳ କଟାଇ ସାତ ରାତିସାକ କେତେ କୁଡ଼ଆରେ, କେତେ ଘରେ ପାଇଁ ସେ ଉଙ୍କି ମାରିଥିବ । କଳା ରାତିରେ ଆଖିର ଡ଼ିମା ଫଟାଇ ସେ ତା'ର ଖାଉନ୍ଦ-ଝାଉନ୍ଦଣୀଙ୍କୁ ଖୋଜିଥିବ । ଛନୋଟି ଗାଁ, ଦୁଇଟି ମଶାଣି, ପାଞ୍ଚଟି ବିଲ-କିଆରି ଟପି ସେ ଶେଷରେ ବୋଉ ପାଖରେ ଆସି ପହଞ୍ଚିଥିଲା ।

ବୋଉ ଓ ବଲେଇ କୁଆଡ଼େ ସେଦିନ କେତେ କନ୍ଦାକଟା କରିଥିଲେ ବୋଲି ବୋଉ ଥରେ ମହେନ୍ଦ୍ରଙ୍କ ଆଗରେ ଗପିଥିଲେ – ଅବଶ୍ୟ ଶିଶୁ ମହେନ୍ଦ୍ର ଆଗରେ, କାହାଣୀ ପାଇଁ ବ୍ୟାକୁଳ ଲଙ୍ଗୁଳୀ ଅଝଟ ମହେନ୍ଦ୍ର ଆଗରେ; ନେକଟାଇ ଗ୍ରସ୍ତ ମହେନ୍ଦ୍ର-ବାବୁଙ୍କ ଆଗରେ ନୁହେଁ ।

ସେଇ ବଳେଇ ଓ ତା'ର ବଂଶଧରବର୍ଗ ବୋଉ ପାଖରେ ଅସୀମ ଆବ୍ଦାରର ଅଧିକାରୀ ହୋଇ ରହିଗଲେ । ସେଇ ଆଜି ବଳେଇଟିହିଁ ଖୋଲପା ଗୁଡ଼ ଗୁଡ଼ ଗୁଳୁଛୁ ସିମିତ । ଜ୍ଞାନ ହେବା ଦିନରୁ ବି. ଏ. ପାସ୍ କରିବା ପର୍ଯ୍ୟନ୍ତ ମହେନ୍ଦ୍ର କେତୋଟି ବଳେଇଙ୍କୁ ଅଙ୍ଗେ ନଭେଇ ଥିଲେ; ସେ କଥା ତାଙ୍କର ଆଉ ମନେ ନାହିଁ । ମୋଟ ଉପରେ ଜ୍ଞାନ ହେବା ଦିନରୁ ଗେଜେଟ୍ ଲିଷ୍ଟ୍‌ର ପ୍ରତିଦ୍ୱନ୍ଦୀମାନଙ୍କୁ ସାମନା କରିବା ପର୍ଯ୍ୟନ୍ତ ମୁଖ୍ୟତଃ ସେ ସେଇ ବଳେଇ ପରମ୍ପରାଟିକୁ ହିଁ ଶତ୍ରୁ ରୂପେ ଚିହ୍ନିଥିଲେ ।

ଗାଁ ଚାଟଶାଳୀରେ ଓ ଅଦୂରସ୍ଥ ମାଇନର୍ ସ୍କୁଲରେ ପଢୁଥିବା ବେଳେ କେତେଥର ଛୁଟିପରେ ଘରକୁ ଦୌଡ଼ି ଦୌଡ଼ି ଆସି ଦେଖିଛନ୍ତି—ତାଙ୍କ ପାଇଁ ଉଦ୍ଦିଷ୍ଟ ପିଠାକୁ ବା କ୍ଷୀରୀ ହାଣ୍ଡିକୁ ଖଣ୍ଡିଆ କରି ଦେଇଛି ବଳେଇ । ସେତିକି ନୁହେଁ, ଥରେ କୌଣସି ଜଣେ ମୂଲ୍ୟବାନ୍ ଅତିଥିଙ୍କ ପାଇଁ ବୋଉ ସଞ୍ଚୟ କରି ରଖିଥିବା କେତୋଟି ସନ୍ଦେଶକୁ ସେ ନିଜେ ଆତ୍ମସାତ୍ କରିବାକୁ ଯିବା ବେଳେ ବଳେଇ ଭାଗ ବସାଇବାକୁ ଚାହିଁଥିଲା । ସେ ଚଢ଼ିକି ଉଠିବାରୁ ବଳେଇ ଯେମିତି କ୍ଷିପ୍ରତା ସହି ପଳେଇଗଲା, ସେଇ ପଳାୟନକୁ ଦେଖି ଅନ୍ଧାର କୋଠରୀ ଭିତରେ କୌଣସି ଅଘଟଣ ଘଟିଥିବାର ଅନ୍ଦାଜକରି ବୋଉ ଆସି ଚୋରକୁ ଧରିଥିଲା । ତା'ପରେ କଲେଜରେ ପଢ଼ିଲା ବେଳେ ଛୁଟିରେ ଆସି ମଧ୍ୟ ସେ ବଳେଇର ଅନଧିକାର ଉପଦ୍ରବ ଭୋଗିଛନ୍ତି ।

ବଳେଇ ବ୍ୟାପାର ନେଇ କେତେଥର ମହେନ୍ଦ୍ର ଅଭିମାନ କରିଛନ୍ତି; ବଳେଇର ଅନ୍ୟାୟ ଉପରେ ଅଶ୍ରୁ ଢାଳି, ପରୀକ୍ଷା ବେଳେ ବଳେଇ ପ୍ରଚଣ୍ଡ ବ୍ୟାଘାତ ସୃଷ୍ଟି କରୁଛି ବୋଲି ତା'ର ନିର୍ବାସନ ଦଣ୍ଡ ମଞ୍ଜୁର କରାଇବାକୁ ବହୁ ଚେଷ୍ଟା କରିଛନ୍ତି । ସବୁଥର ବଳେଇ ତରଫରୁ ବୋଉ ବାପଟା ପୁଅଟା କହି ନେତୃତ୍ୱ ହୋଇଛି । ମହେନ୍ଦ୍ର କ୍ରମାଗତ ଭାବରେ ପରାଜିତ ହୋଇଛନ୍ତି ।

ମହେନ୍ଦ୍ର ଇଜିଚେୟାରରେ ଏକଡ଼ ସେକଡ଼ ହେଉଥିଲେ । ଭାବି ଚାଲିଥିଲେ । ହଠାତ୍ ତାଙ୍କ ଛାତି ଭିତରେ ଚହଁକିନା ଗୋଟାଏ ଅନୁଭୂତ ହେଲା । ମୃତ ମୁହୂର୍ତ୍ତ ସବୁର ପାହିଁଶଗଦା ଅଣ୍ଡାଳୁ ଅଣ୍ଡାଳୁ ହଠାତ୍ ଯେମିତି ଚେତି ନଆଁ ମୁଣ୍ଡାଟିଏ ସେ ଛୁଇଁ ପଡ଼ିଲେ । ତାଙ୍କ ଜୀବନ ଗ୍ରନ୍ଥର ବଳେଇ ଅଧ୍ୟୁଷିତ ଅଧ୍ୟାୟଟିର ଏହାହିଁ ହେଲା ଶେଷ ପୃଷ୍ଠା । ପଇଁତିରିଶ ବର୍ଷ ଗତ ହେବା ପରେ ହଠାତ୍ ଏଇ ପୃଷ୍ଠାଟି ତାଙ୍କୁ ଆନ୍ଦୋଳିତ କରି ତୋଳିଲା ।

.......ନୂଆ ସବ୍‌ଡେପୁଟୀ ହୋଇ ଗୁମୁସୁର ତାଲୁକରେ ଯୋଗ ଦେବା ପାଇଁ ଆଦେଶ ପାଇ ଦୁଇଦିନ ଲାଗି ମହେନ୍ଦ୍ର ଏଇ ଗାଁକୁ ଆସିଥିଲେ ବୋଉକୁ ନେଇଯିବା ପାଇଁ, ଅବେଳରେ ଘରେ ପହଞ୍ଚିଲେ । ବୋଉ ତରବରରେ ଦୁଇଟା ଭାତ ଫୁଟେଇ ଦେଇଥିଲା ଓ ପୂର୍ବରୁ ସାଇତା ଥିବା ମାଛପୋଡ଼ା ପୁଳାଏ ଆଣି ଥୋଇ ଦେଇଥିଲା ।

ସେ ଠିକ୍ ଖାଇବାକୁ ଯାଉଛନ୍ତି । ଏତକ ବେଳେ କାହିଁଥିଲା ବଲେଇଟି ଆସି ମାଛ ପୋଡାକୁ ପୁଲାଏ ଓଟାରି ନେଲା । ମହେନ୍ଦ୍ର ଜୋର କରି ଉଠିଲେ । ବଲେଇଟି ସେତେବେଳେ ଜଣେ ଅପରିଚିତର ଅସ୍ୱାଭାବିକ କଣ୍ଠସ୍ୱର ଶୁଣି ଦଉଡ଼ିବାକୁ ଲାଗିଲା । କ୍ଷୁଧାର୍ତ୍ତ ସତ୍ତ୍ୱେପୂର୍ଣ୍ଣ ମହେନ୍ଦ୍ର ମିଶ୍ର ବଲେଇ ପଛରେ ଦଉଡ଼ିବାକୁ ଲାଗିଲେ ।

ବୋଉ ବସ୍ତୁନା ଧୋଇ ଛୁଡା ଧୋଇ ରହିଲା । ଏ ବଲେଇଟି ପୂର୍ବବର୍ତ୍ତୀ ବଲେଇର କନ୍ୟା । ମହେନ୍ଦ୍ରର ସ୍ୱଭାବ ସହିତ ଏକେ ଅପରିଚିତ, ତା'ପରେ ସେ ଥିଲା ଅନ୍ତଃସତ୍ତ୍ୱା । ମାଛପୋଡ଼ା ପ୍ରତି ମାତ୍ରାଧିକ ଲୋଭର ଏଇ ହେତୁ ଏକମାତ୍ର ବୋଉହିଁ ବୁଝୁଥିଲା ।

ମହେନ୍ଦ୍ର ମିଶ୍ର କିନ୍ତୁ ତାଙ୍କ ଆବାଲ୍ୟ ଅବଦମିତ କ୍ରୋଧର ଇନ୍ଧନରେ ଏକ ଉତ୍ତପ୍ତ ଇଞ୍ଜିନ୍ ବନି ଦୌଡ଼ୁଥିଲେ । ଆଜି ସେ ନିଜେ ହିଁ କମ, ଦଣ୍ଡଦେବା ପାଇଁ ବୋଉର ଅନୁମତି ଲୋଡା ନାହିଁ ଆଉ । ବୋଉ ପାଖରେ ସର୍ବଦା ଦେହଘଷା ବଲେଇଟି କ୍ଷିପ୍ରତାରେ ଅଭ୍ୟସ୍ତ ନଥିଲା । ଏହାର ଜନ୍ମଠାରୁ କ୍ୱଚିତ୍ ମହେନ୍ଦ୍ର ଘରକୁ ଆସୁଥିଲେ ବୋଲି କାହାରି କବଳରୁ ଆତ୍ମରକ୍ଷା କରିବାର ପ୍ରୟୋଜନ ପୂର୍ବରୁ ତାର କେବେ ହୋଇ ନଥିଲା ।

ବଲେଇ ପ୍ରଥମେ କିଛିବାଟ ଦୌଡ଼ି ପଛକୁ ଚାହିଁଲା—ମହେନ୍ଦ୍ରଙ୍କର କ୍ରୋଧ ପ୍ରଶମିତ ହୋଇଥିବା ଆଶା କରି; କିନ୍ତୁ ପୁଣି ତ କୁ ବିକଳରେ ଦୌଡିବାକୁ ପଡ଼ିଲା । କ୍ରମେ ଘରୁ ବାହାରକୁ—ତା'ପରେ ବାଲୁକା ବୃଦାମୟ ବିସ୍ତୀର୍ଣ୍ଣ ପ୍ରାନ୍ତର ଭିତରେ । ଓଜନିଆ ପେଟଟିକୁ ବୋହି ବୋହି ଶଙ୍କୀ ବଲେଇଟି ଅଙ୍ଗେଇ ଅଙ୍ଗେଇ ଦୌଡ଼ୁଛି । ଥରେ ଥରେ ପଛକୁ ଫେରି ଚାହୁଁଛି । ପୁଣି ଶକ୍ତି ସଞ୍ଚୟ କରି ଦୌଡ଼ୁଛି । ପଛ ଗୋଡ ଦୁଇଟା ଫରକଟେଇ ଯାଉଛି, ଗର୍ଜି ପଡ଼ୁଛି ଥରେ ଥରେ ।

ବହୁ ବିଳମ୍ବରେ ମହେନ୍ଦ୍ର ଘରକୁ ଫେରି ଆଉ କିଛି ଖାଇଲେ ନାହିଁ । ସନ୍ଧ୍ୟା ବେଳକୁ ବୋଉ ଜଳିଦ ଭାତ ବସାଇଲେ । ଝିଅପିଆ କରି ମହେନ୍ଦ୍ର ନିଘୋଡ ନିଦରେ ଶୋଇ ପଡ଼ିଲେ । ନିଶାର୍ଦ୍ଧରେ ଥରେ ଉଠି ଦେଖନ୍ତି ତ ଗୋଟେଇ ଘରେ ଡ଼ିବି ଜାଳି ବୋଉ ଚୁପ୍‌କିନା ବସିଛି । ସେ ଯେ ନିଶ୍ଚିତ ଭାବରେ ଗର୍ଭବତୀ ବଲେଇଟିର ପ୍ରତୀକ୍ଷା କରି ବସିଥିଲା ଏଥିରେ ମହେନ୍ଦ୍ରଙ୍କର ସନ୍ଦେହ ରହିଲା ନାହିଁ ।

ତହିଁ ପରଦିନ ଜନକ ପନ୍ଦର ବନ୍ଧାବନ୍ଧ ଓ ଆନୁଷଙ୍ଗିକ ଯାବତୀୟ ପରିଶ୍ରମ ଭିତରେ ବୋଉ ଦିନ ଚାରିଥର ଗାଁ ଭିତରକୁ ବିଲବାଡ଼ ଓ ପଡ଼ିଆ ଉପରକୁ ଯାଇଛି । ପରବର୍ତ୍ତୀ ପ୍ରଭାତରେ ସେ ପୁଅ ସହ ଚାଲିଯିବ—ବଲେଇଟିକୁ ସାଙ୍ଗରେ ନେବା ପାଇଁ ଯଦି ହାକିମ ପୁଅ ଅନୁମତି ଦେଇ ନଥାନ୍ତା, ଅନ୍ତତଃ କୌଣସି ଆତ୍ମୀୟ ଉପରେ ସେ ତାକୁ ଦେଖା ଶୁଣା କରିବାର ଦାୟିତ୍ୱ ଦେଇ ଯାଇଥାନ୍ତା ।

କିନ୍ତୁ କର୍ଜନ ସୂର୍ଯ୍ୟାସ୍ତର ସମସ୍ତ ରଙ୍ଗ ଆକୁଳ ଦୃଷ୍ଟିରେ ପ୍ରାନ୍ତରକୁ ଚାହିଁ ରହିଥିବା ବୋଉର ମୁହଁ ଉପର ଦେଇ ଝଗିଡ଼ ହୋଇଗଲା । ସମସ୍ତ ଘନ ମେଘ ବର୍ଷୁଥିଲା । ବାରମ୍ବାର ଓଦା ହୋଇ ବୋଉ ବାଣପଟସାକ ଥରଥର କୁଳ ଆସୁଥିଲା ।

ସୂର୍ଯ୍ୟାସ୍ତର କିଛି ପୂର୍ବରୁ ଶଗଡରେ କନକଷପନ୍ଦପଦ୍ମ ବୋଉକୁ ବସାଇ ମହେନ୍ଦ୍ର ଷ୍ଟେସନ ଗ୍ଲଲେ । ଚାଳିଶ ବର୍ଷକାଳ ଏଇ ଗାଁର ଚୌହଦୀ ଭିତରେ କଟାଇବା ପରେ ସେଇ ଯେଉଁ ବ୍ୟାକୁଳ ଦୃଷ୍ଟି ବୁଣି ବୁଣି, ଉଦ୍‌ଗତ କୋହ ଚାପି ଚାପି ବୋଉ ପ୍ରାନ୍ତର ପାର ହୋଇ ଶଗଡ଼ରେ ଯାଇଥିଲା, ଆଜି ସେ ବାହୁଡ଼ି ନାହିଁ ।

ମହେନ୍ଦ୍ରବାବୁ କେତେବେଳେ ଇଜିଚେୟାରରୁ ଉଠି ଛିଡା ହୋଇ ସାରିଥିଲେ । ଜୀବନର ଏହି ଶେଷ ମୁହୂର୍ତ୍ତି ଗୁଡ଼ିକ ଗାଁରେ କଟାଇ ଦେବାକୁ ଆସି ସେ ଆଜ ଯାହାକୁ ନୂଆକରି ପୁଣି ଅନୁଭବ କରିବାକୁ ଆରମ୍ଭ କରିଥିଲେ, ସେଇ ବୋଉ କାହିଁ ? ସମୟ-ସ୍ରୋତର ଅଜସ୍ର ଧକ୍‌କାରେ କେଉଁ ସୁଦୂରରେ ସେ ବିଲୀନ ହୋଇଛି । ବୋଉ କୋଉପୁଟରେ ଯେଉଁ କେତୋଟି ଧନ ରହିଥିଲା, ହୁଏତ ସେଇ ବଳେଇ କଥାହିଁ ଭାବୁଥିଲା । ସେଇ ବର୍ଷାପ୍ଲାବିତ ରାତିରେ ବଳେଇଟି କେଉଁଠି ଆଶ୍ରା ନେଇଥିବ – ହୁଏତ ଧନକ ପରେ ଛପି ଛପି ଘରକୁ ଫେରି ଆସି ସବୁ ଶୂନ୍ୟ ଦେଖିଥିବ—ବୋଉ ଇମିତ ଭାବି ଭାବି ହୁଏତ ଜ୍ୱରାକ୍ରାନ୍ତ ହୋଇ ପଡ଼ିଥିଲା ।

ମହେନ୍ଦ୍ରବାବୁ ପଦଚାରଣା କରୁଥିଲେ । ସେ ପ୍ରଚୁର ଟଙ୍କାଧରି ଆସିଛନ୍ତି । ଏ ଘରକୁ ଶୀଘ୍ର କୋଠାରେ ରୂପାନ୍ତରିତ କରିବେ । କିନ୍ତୁ ଚାଲଘରେ ବୋଉ ତା'ର ନିଃସଙ୍ଗ ଜୀବନ କଟାଇ ଦେଇଥିଲା—ପିତୃ ବଂଶର ଅବହେଳିତ ବଳେଇଟି ଓ ତା'ର ବଂଶଧରମାନଙ୍କୁ ଲାଳନ ପାଳନ କରି । ଅଥଚ ଘରଟାଭୁଡ଼ି ଗଲାବେଳେ ସେ ସେଇ ପ୍ରଥମ ଆଶ୍ରିତ ବଳେଇ ପ୍ରତି ତାର ଅଙ୍ଗୀକାର ଖିଲାପ କରିବାର ଗ୍ଲାନି ବୋଧ ନେଇ ଯାଇଥିବ ! ବୋଉ ଦୀର୍ଘଶ୍ୱାସ ତ୍ୟାଗକରି ଯାଇଥିଲା, ପଚିଶିଚାଳିଶ ବର୍ଷ ପରେ ଆଜିର ବର୍ଷା ସ୍ନାତ ଅପରାହ୍ଣରେ ସେଇ ନିଃଶ୍ୱାସ—ଉଦ୍‌ଭୂତ ହୁତାଶନ ମହେନ୍ଦ୍ରଙ୍କ ଛାତି ଭିତରେ ଧକ୍‌ଧକ୍ ଜଳିବାକୁ ଲାଗିଲା ।

ମହେନ୍ଦ୍ରଙ୍କ ପଦଚାରଣା ଦ୍ରୁତ ହେବାକୁ ଲାଗିଲା । ନବ ନିଯୁକ୍ତ ଗାଉଁଲି ଚାକର ପିଲାଟି ପ୍ରକମ୍ପିତ ହାତରେ ଚାହା କପ୍‌ଟି ଧରି ତାଙ୍କ ପଛେ ପଛେ ସିମିତ ପଦଚାରଣ କରି ଲାଗିଥାଏ । ହଠାତ୍ ମହେନ୍ଦ୍ରବାବୁ ଘର ଭିତରକୁ ପଶିଗଲେ ଓ ଛତାଟି ଉଠାଇଲେ । ସ୍ତ୍ରୀ ମନ୍ଦାକିନୀ ମମତାଭରା କଣ୍ଠରେ ପାନ ଚୋବାଉ ଚୋବାଉ କହିଲେ "ବର୍ଷା ଆରମ୍ଭ ହେଲାଣି । ବାହାରୁଚ କୁଆଡେ ?"

ମହେନ୍ଦ୍ରବାବୁ ଅସତର୍କ ସ୍ୱରରେ କହି ଆସୁଥିଲେ—"ବିଲେଇଟିକୁ...କିନ୍ତୁ କଥା ବଦଳେଇ କହିଲେ—"ବିଲଆଡ଼େ ଥିବା ଆମ ପୋଖରୀଟାର ଅବସ୍ଥା ଦେଖି ଆସିବାକୁ ଯାଉଛୁ ।" ସେ ବାହାରି ଗଲେ । ଓଜନ ପଙ୍କ୍ତିର ବର୍ଣ୍ଣାଧିଆ ବାଲୁକା-ପଥ । ଛତାଟାଣି ମହେନ୍ଦ୍ରବାବୁ ଏକମୁହାଁ ଚାଲିଛନ୍ତି । ଏ ପଥରେ ବୋଉ କାଖରେ ବସି ସେ କେତେଥର ବଉଳଫୁଲ ଗୋଟାଇବାର ଜିଦ୍ ଧରି ଏଇ ବଉଳଗଛ ମୂଳକୁ ଆସିଛନ୍ତି । ସାଥିରେ ବିଲେଇ ଆସିଛି ଡେଇଁ ଡେଇଁ । ବୋଉର ବିଲେଇକୁ ଗାଁର କୁକୁରବି ଭୁକୁ-ନଥିଲା । ଦୈବାତ୍ ପାଖ ପଡ଼ୋଶୀ ଘରେ ପଶି କିଛି ଚୋରିଚୁପି ଦେଲେ ମଧ୍ୟ ବୋଉର ବିଲେଇକୁ କେହି ବାଡ଼ିଆ ପିଟା କରୁନଥିଲେ । ଅଳକ୍ଷଣୀ ବୋଉଥିଲା ଗାଁଟା ସାରାରେ ଅନନ୍ୟା ।

ମହେନ୍ଦ୍ର ବଉଳଗଛ ମୂଳେ ଇତସ୍ତତଃ ଅନାଇଲେ ନାହିଁ । ସେ ଆଉ କିଛି ଆଗକୁ ଯାଇ ଅନାବାଦ ଜାଳର ଓସ୍ତଗଛ ଘେରକୁ ଚାହିଁଲେ ନାହିଁ । ତଥାପି ବିଲେଇକୁ ବାହାର କରିବାକୁ ପଡ଼ିବ । ମହେନ୍ଦ୍ର ଯାଇଁ କ୍ରମେ ଗାଁ ବାହାରର ସେଇ ବୁଦବୁଦିଆ ପ୍ରାନ୍ତର ଉପରେ ଠିଆ ହେଲେ । ଦିଗ୍‌ବଳୟରେ ବିଜୁଳି ଚମକୁଛି ଘନ ଘନ । ବିସ୍ମୃତିର ଅନ୍ଧକାର ପ୍ରକୋଷ୍ଠକୁ ଯିମିତି ଝଲକିତ କରି କରି ମନେ ପକେଇ ଦେଉଛି ସେଇ ବିଜୁଳି...ଏଇଠି ବିଲେଇ ଥମିଯାଇ ଥରେ ପଛକୁ ଅନାଇଥିଲା । ତାହିଁ ପରେ ଅଦୂରର ସେଇ ଢିପ ପାଖରେ ପୁଣିଥରେ ପଛକୁ ଅନାଇଥିଲା । ପଁଚିଶ ବର୍ଷ ତଳର ନିଜସ୍ୱ ପଦାଙ୍କ ଅନୁସରଣ କରି ମହେନ୍ଦ୍ରବାବୁ ଚାଲିଛନ୍ତି— ହାକିମ ଜୀବନର ପ୍ରଥମ କୃତୀକୁ ବାତିଲ କରିବା ସକାଶେ ।

ମେଘ କ୍ରମେ ଗହଳ ହୋଇ ଆସୁଛି । ବର୍ଷା କ୍ରମେ ଜୋର୍ ପିଟୁଛି । ଅନ୍ଧକାର ଚହଟି ଆସିବା ସଙ୍ଗେ ସଙ୍ଗେ ପବନ ଉଗ୍ର ହେଉଛି । ଛତା ଦୁଇଥର ଓଲଟିଗଲା । ମହେନ୍ଦ୍ରବାବୁ ତାକୁ କୌଣସି ମତେ ସମ୍ଭାଳି ବନ୍ଦକରି ଦେଲେ ଓ ଗୋଟିଏ ବରଗଛ ମୂଳକୁ ଯାଇ ଖୁବ୍ ପାଟିକରି ବିଲେଇକୁ ଡାକିବାକୁ ଚାହିଁଲେ । କିନ୍ତୁ ବୋଉ କ'ଣ ବୋଲି ଡାକୁଥିଲା ତାକୁ ? ପୂର୍ବ ବିଲେଇ ସବୁର ଗୋଟିକର ନାମ ଥିଲା ଠୁମୁକି, ତସ୍ୟ କନ୍ୟାର, ନାମଥିଲା ଝୁମୁକି । କିନ୍ତୁ ଏଇଟିର ନାମ ମନେ ନାହିଁ । ଏଇଟି ଥିଲା ଗର୍ଭବତୀ । ହୁଏତ ସ୍ୱା'ର ଝିଅ ପୁଅଙ୍କ ନାମ ବି ବୋଉ ଠିକ୍ କରି ରଖିଥିଲା ।

ମହେନ୍ଦ୍ର ଆହୁରି ଦୂରକୁ ଚାଲିଗଲେ । ତା ପରେ କେତେ ପ୍ରକାର ବିଲେଇର ନାମଧରି ଡାକିଲେ । ପ୍ରବଳ ଝଡ଼ ଓ ଘଡ଼ଘଡ଼ି ଭିତରେ ଡାକସବୁ ଫୁଟ୍ ଫୁଟ୍ କୁଆଡ଼େ ଉଡ଼ିଗଲା । ନିଷ୍ଫଳ ସ୍ୱରରେ ସେ ଛୁଟା ହୋଇଛନ୍ତି । ମୁଣ୍ଡରୁ ସରସର ବାରିଧାର ଦେହକୁ ପ୍ଲାବିତ କରି ଗଡ଼ି ଚାଲିଛି । ଏକ ଅସହ୍ୟ ପ୍ରଦାହକୁ ଶୀତଳ କରି ଚାଲିଛନ୍ତି ସେ ।

ସେଇ ସ୍ତମ୍ଭୀଭୂତ ଅବସ୍ଥାରେ କେତେ ସମୟ ବିତିଗଲା । ଏତେ ବର୍ଷ ପରେ ବ ବଳେଇଙ୍କି ତାଙ୍କ ଡାକ ଶୁଣି ଶ୍ରଦ୍ଧାରେ ଫେରି ଆସିଛୁ ।

ବଳେଇ ଘରକୁ ଫେରୁଛୁ । ଆଉ କିଛି ସମୟ ପରେ ଝଣ୍ଟିଆ କାନ୍ଥ ଡେଇଁ ଚୂଲୀ ମୁଣ୍ଡରେ ଗୁର୍ର୍ ମ୍ୟାଉଁ ଗୁର୍ର୍ ମ୍ୟାଉଁ ହେବ । ଏହି ପଥରେ ବଳେଇ ଦିନେ ଯାଇଥିଲା । ସେଇ ପଥରେ ପୁଣି ବଳେଇ ଫେରୁଛୁ । ଏଇ ଘର । ଏଇ ସେପେଇ ଘରର ପଛପାଖ । ଏଇ ଝଣ୍ଟିଆ-କାନ୍ଥ....ଆହୁରି ଆଁ ହୋଇଗଲାଣି । ବଳେଇ କାନ୍ଥ ଡେଇଁ ପଶିଲା । ଚୂଲୀ ମୁଣ୍ଡରେ ମନ୍ଦାକିନୀ ଦେବୀ ଲୁଚି ଭାଜୁ ଭାଜୁ ହତବାକ୍ ହୋଇ ଅନେଇଛନ୍ତି । ବଳେଇ ଯାଇ ଚୂଲୀ ମୁଣ୍ଡରେ ବସିଲା । ତା'ପରେ ଗୁର୍ର୍‌କୁ ମ୍ୟାଉଁ ଡାକିବାକୁ ଉଦ୍ୟତ ହେଉଛି, ସେତିକିବେଳେ ମନ୍ଦାକିନୀ ଦେବୀ ପଚାରିଲେ — "ମୁଁ ଲଣ୍ଡନ ଓ ବର୍ଷାତି ଦେଇ ଦୁଇଜଣଙ୍କୁ ପଠାଇଲିଣି । କୁଆଡ଼େ ଭଜୁଥିଲ ଯେ, ଦାଣ୍ଡ ଦୁଆର କବାଟ ଫିଟାଇବାକୁ ଡାକ ପାରିଲ ନାହିଁ, କାନ୍ଥ ଡେଇଁ ଭିତରକୁ ପଶୁଛ । ପୁଣି ବଳେଇ ଭଳି ଚୂଲୀ ମୁଣ୍ଡରେ ଜୁଡୁବୁଡୁ ହୋଇ ବସୁଛ ।"

ଆଗନ୍ତୁକ ବୁଝିଲେ, ସେ ବଳେଇ ନୁହଁନ୍ତି—ଅବସର ପ୍ରାପ୍ତ ଜିଲ୍ଲା ମାଜିଷ୍ଟ୍ରେଟ୍ ପାଞ୍ଚବର୍ଷ ତଳେ ଅବସର ଆଇ. ଏ. ଏସ. ପ୍ରାପ୍ତ ମହେନ୍ଦ୍ର ମିଶ୍ର, ପରଲୋକ ଗତ ପୁରନ୍ଦର ମିଶ୍ରଙ୍କ ପୁଅ, ମନ୍ଦାକିନୀ ଦେବୀଙ୍କ ସ୍ୱାମୀ, ପ୍ରଥମ ଶ୍ରେଣୀର କଣ୍ଟ୍ରାକ୍ଟର ସୁଧୀର ମିଶ୍ରଙ୍କ ପିତା ଓ ଅଧ୍ୟାପକ ବଙ୍କିମ ପ୍ରଧାନଙ୍କ ଶ୍ୱଶୁର ଏବଂ ଇତ୍ୟାଦି, ଇତ୍ୟାଦି··· ।



# ଅଜଣ ପରିଚୟ

ମହାପାତ୍ର ନୀଳମଣି ସାହୁ

---

ଅନ୍ଧାର—ଅନ୍ଧାର । ଏତେ ଆଲୁଅ ଥାଇ ମଧ୍ୟ ଚାରିଆଡ଼େ ଅନ୍ଧାରିଆ ଦିଶିଲାଣି ଦିନ ଯାହା ରାତି ତାହା । ଆଉ ମୁହଁକୁ ମୁହଁ ଭଲ ଦିଶୁନାହିଁ । କେହି ମଧ୍ୟ ଆଉ କାହା ମୁହଁ ଦେଖି ପାରୁନାହାନ୍ତି ସ୍ପଷ୍ଟ । ଅସ୍ପଷ୍ଟ ଦିଶିଲେଣି ସମସ୍ତେ ଛାୟା ମୂର୍ତ୍ତି ଭଳି । କଥା ମଧ୍ୟ ଏଣିକି ଆଉ ଠିକ୍ ଭାବେ ଶୁଭୁନାହିଁ । କେବଳ ଶବ୍ଦରୁ ଜାଣି ହେଉଛି—ସ୍ୱରରୁ ବାରି ହେଉଛି । ଏମିତି ହୋଇ ଉଠିଲାଣି ଏ ପୃଥିବୀ ଆଜି କାଲି ଅର୍ଦ୍ଧ ଦୃଶ୍ୟ ଆଉ ଅର୍ଦ୍ଧ ଶ୍ରାବ୍ୟ ।

ଶଶୀକାନ୍ତ ବାବୁ ଏବେ ଏମିତି ଏମିତି ଭାବୁଛନ୍ତି । ସାଧାରଣ କିରାଣୀଟିଏ ହୋଇ ସେ ଚାକିରିରେ ପଶିଥିଲେ । ବର୍ତ୍ତମାନ ସେ ଜଣେ ଉଚ୍ଚପଦସ୍ଥ କର୍ମଚାରୀ । ଅବସର ନେବାକୁ ଆଉ ବେଶୀ ବର୍ଷ ବାକି ନାହିଁ । ପିଲାମାନେ ଅବଶ୍ୟ ଏପର୍ଯ୍ୟନ୍ତ ପାରି ଉଠି ନାହାନ୍ତି । କିନ୍ତୁ ଯାହା ଦେଖା ଯାଉଛି—ପାରିଯିବେ ସମସ୍ତେ । କେହି ପଛ ରହିବେ ନାହିଁ— ପଛରେ ପଡ଼ିଯିବେ ନାହିଁ; ମାତ୍ର ଶଶୀକାନ୍ତ ବାବୁ ଏବେ କେମିତି ଆଉ ଗୋଟେ ପ୍ରକାର ଅନୁଭବ କରୁଛନ୍ତି । ଆଜକୁ କୋଡ଼ିଏ ପଚିଶ ବର୍ଷ ତଳେ ଅବସ୍ଥା କିନ୍ତୁ ଥିଲା ଭିନ୍ନ ପ୍ରକାର ।

ସେତେବେଳେ ସ୍ପଷ୍ଟ ଭାବେ ମୁହଁ ଦେଖିବାର ସୁଯୋଗ ମିଳୁଥିଲା । ସ୍ପଷ୍ଟ ଭାବେ କଥା ଶୁଣିବାର ଏକ ପରିବେଶ ମଧ୍ୟ ମିଳୁଥିଲା । ସେତେବେଳେ ଅନୁରାଧାର ମୁହଁ ସ୍ପଷ୍ଟ ଦେଖି ହେଉଥିଲା । ଗାଢ଼ାକଜ୍ଜଳର ନୟନଯୋଡ଼ିରେ ଫୁଟିଥିବା ନୀଳକଇଁ ଭଳି ଦୁଇଟି ଆଖି । ଓଲଟ ରଜନୀଗନ୍ଧା ଫୁଲଟିଏଭଳି ନରମ ଶୁଭ୍ର ନାକଟିଏ । ଆଉ ପାଚିଲା କଇଁଚ କାକୁଡ଼ି ଭଳି ପୁରୁ ପୁରୁ ଦୁଇଟି ଓଠ । ସେ ଓଠ ଦିଓଟି ପୁଣି ସବୁବେଳେ ଥରିଲାଭଳି ଦିଶେ । ହସିଲା ବେଳେ ଯେମିତି—କାନ୍ଦିଲା ବେଳେ ସେମିତି, ଆଉ ରାଗିଲା ବେଳେତ ଆହୁରି ଅପୂର୍ବ । ଅନୁରାଧାର ସେହି ଦ୍ୱାଦଶୀଚନ୍ଦ୍ର ଭଳି କପାଳକୁ ପୁଣି ଢାଙ୍କି ରଖୁଥିଲା ତା'ର ସେହି ସୁନ୍ଦର କେଶତକ ।

ଏତେକ ସବୁ ଦେଖି ହେଉଥିଲା । କାରଣ ସେତେବେଳେ ତାଙ୍କ ଆଖିରେ ଥିଲା ପର୍ଯ୍ୟାପ୍ତ ଆଲୁଅ । ଅନୁରାଧା ମଧ୍ୟ ଥିଲା ସତେ କ ଖାଲି ମୁହଁ ଟିଏ । ଯୋଉ ମୁହଁ କୁ ସବୁବେଳେ ଦେଖିବା କଥା, ଯୋଉ ମୁହଁ ରୁ ଖାଲି ସବୁବେଳେ ଲଳିତ ଲବଙ୍ଗ ଲତାଭଳି ବାକ୍ୟମାନ ଶୁଣିବା କଥା । ଏଥିରେ ସନ୍ଦେହ ନାହିଁ ଯେ ଶଶୀକାନ୍ତ ବାବୁ ସେହି ମୁହଁ ଟିକୁ ଦେଖୁଥିଲେ ଓ ଶୁଣୁଥିଲେ ହନଗନ୍ଧ ମନଭରି ସେହି ମୁହଁ ଟିରୁ ଉଦ୍‌ଭୁତ ଯାବତୀୟ ଶବ୍ଦ ଆଉ ବାକ୍ୟର ସଙ୍ଗୀତ ।

ଆଜି ଅବଶ୍ୟ ଅନୁରାଧା ଆଉ ସେତେବେଳର ଅନୁରାଧା ହୋଇ ନାହିଁ; ମାତ୍ର ସେ ଆଉ ତାଙ୍କର ଆଖିକୁ ମଧ୍ୟ ସ୍ପଷ୍ଟ ଦିଶୁନାହିଁ । ତା'ର କଥା ମଧ୍ୟ ଆଉ କାନକୁ ସ୍ପଷ୍ଟ ଶୁଭୁନାହିଁ । ଖାଲି ତା'ର ଛାଯ୍ଯା—ମୂର୍ତ୍ତିଟିକୁ ଦେଖି ଜାଣିବା କଥା ଯେ ଅନୁରାଧା — ହେଉ ଅନୁରାଧା । ଖାଲି ତାର ପାଟିର ସ୍ୱର ଶବ୍ଦରୁ ବୁଝିବା କଥା ଯେ ଅନୁରାଧା ହେଉ ଅନୁରାଧା ।

ନା — ନା— ତାଙ୍କର ଅନୁରାଧା ଉପରେ ଯେ ବିରାଗ ଆସି ଯାଉଛି— ତାହା ନୁହେଁ । ବରଂ ସେ ଅନୁରାଧା ପ୍ରତି ଆହୁରି ଅଧିକ ଆସକ୍ତ ହୋଇ ପଡ଼ିଛନ୍ତି । ଅନୁରାଧାର ସାମାନ୍ୟ ଅନୁପସ୍ଥିତିକୁ ମଧ୍ୟ ସେ ସହ୍ୟ କରିପାରୁ ନାହାନ୍ତି । ମାତ୍ର ଅନୁରାଧାର ସ୍ୱତନ୍ତ୍ର ଅସ୍ତିତ୍ୱକୁ ସେ ଆଉ ଅନୁଭବ କରିପାରୁ ନାହାନ୍ତି, ସତେକି ଅନୁରାଧା ତାଙ୍କ ନିଜର ଗୋଟିଏ ଛାଇ— ଯେ କି ତାଙ୍କ ପାଖେ ପାଖେ ଅଛି — ଅଥଚ ସେ ତାକୁ ପଛପଟର ଛାଇ ଭଳି ଆଦୌ ଦେଖି ପାରୁ ନାହାନ୍ତି ।

ମାତ୍ର ଅନୁରାଧା ବୁଝନ୍ତି ନାହିଁ । କହନ୍ତି—ତୁମେ ବୋଧେ ଆଉ ମତେ ଭଲ ପାଉ ନାହିଁ । ଶଶୀବାବୁ ଅନ୍ୟ ମନସ୍କ ଥିବାଭଳି କହନ୍ତି— ଭଲ ପାଇବାର ଆଉ ସେ ବୟସ ଅଛି ମୋର ଅନୁ !

ଅନୁରାଧା ଚିଡ଼ି ଉଠନ୍ତି । ସବୁବେଳେ ଖାଲି ସେଇ ବୟସ — ବୟସ । ପଚାଶ ଏକାବନ ବର୍ଷ ଏମିତି କ'ଣ ଗୋଟାଏ ବୟସ । ନିପାଠୀ ସାହେବଙ୍କୁ ଦେଖିଲ ? କହୁଥିଲ ପରା ତୁମଠାରୁ ଦୁଇବର୍ଷ ସେ ବଡ । ସେ କ'ଣ ତୁମରି ଭଳି ହେଉଛନ୍ତି ? ତୁମେତ ଖାଲି ବୟସ ବୟସ ହେଲ ! ହେଲା ବା ଗୁଡ଼ାଏ ଦାନ୍ତ ଭଙ୍ଗା ହେଲା, ସେଥିରେ କ'ଣ ଅଛି ? ପାଇରିଆ କ'ଣ ବୟସ ଦୋଷରୁ ହୁଏ ? ମୋର ବଡ ଭାଇଙ୍କର ଝିଅଟାକୁ ଦେଖିଲତ । ଦଶବର୍ଷର ଝିଅ ଦାନ୍ତତକ ସବୁ ଉପାଡ଼ିବାକୁ ପଡ଼ିଲା କଟକରେ ଦାନ୍ତ ଡାକ୍ତର ରମାକାନ୍ତ ନନ୍ଦଙ୍କ ପାଖରେ । କଅଣ ହେଲା ସେଇଠୁ ଚଷମାର ପାଓ୍ୱାର ବଢ଼ିଗଲେ ? ଆଖି ଖରାପ କଅଣ ଖାଲି ବୟସ ଦୋଷରୁ ହୁଏ ? ତୁମ ଭଉଣୀର ସାନପୁଅ— ବୟସ ଆଠ କି ନଅ ହେବତ । କେତେ ମୋଟା ଚଷମା ଭଲା ତାକୁ

ପିନ୍ଧିବାକୁ ପଡ଼ନ୍ତା ? ଆଖି ଡାକ୍ତର ଚଣ୍ଡୀବାବୁର ବି ଆଖି ଖୋସି ହୋଇ ପଡ଼ନ୍ତା ! ତା' ନୁହେଁ ଯେ ତୁମେ ମୋଟ ଉପରେ ଭାବି ନେଲଣି ଯେ ତୁମେ ବୁଢ଼ା ହୋଇଗଲଣି ।

ଶଶୀକାନ୍ତବାବୁ ଗୋଟାଏ ସିଙ୍ଘାଅଣ୍ଡାରୁ ଫାଳେ ପାଟିରେ ପୁରାଇ ପୁରାଇ ହଠାତ୍ ହସି ଉଠନ୍ତି । କହନ୍ତି—ଅନୁ ! ତଥାପି ତୁମେ ମୋ ଠାରୁ ଆଠବର୍ଷ ସାନ । ଆଉ ଆଠବର୍ଷ ଯାଉ—ଦେଖିବ, ତୁମର ବି ମନର ଅବସ୍ଥା କଣ କେମିତି ହୋଇଥିବ ।

ଏଇ କଥାଟି ଶୁଣିବା ମାତ୍ରେ ଅନୁରାଧାଙ୍କର ମନ ପୁଲକିତ ହୋଇଯାଏ । ତାଙ୍କର ସ୍ୱାମୀଙ୍କ ପାଖରେ ନୈବେଦ୍ୟ ହେବାକୁ ମନ ବଳେ । ସେ ଯେ ବୟସରେ ସ୍ୱାମୀଙ୍କ ଠାରୁ ଆଠବର୍ଷ ସାନ— ଏହି କଥା ସେ ଆଜିକୁ ପଚିଶବର୍ଷ ଧରି ଶୁଣି ଆସୁଛନ୍ତି; ମାତ୍ର ଯେତେବେଳେ ଶୁଣନ୍ତି ତାଙ୍କ ପ୍ରାଣରେ ଗୋଟାଏ ପୁଲକ ଖେଳିଯାଏ । ସ୍ୱାମୀ ବିବାହ ଦିନଠାରୁ ତାଙ୍କ ସଙ୍ଗେ ସର୍ବଦା ସମ୍ମାନଜନକ ବ୍ୟବହାର କରି ଆସିଛନ୍ତି । ସେ ତାଙ୍କଠାରୁ ବୟସ, ବିଦ୍ୟା ଆଉ ନାନାଦି ଗୁଣାବଳୀର କେତେଟା ପାହାଚ ତଳେ ଥିଲେବି ସ୍ୱାମୀ ତାଙ୍କୁ ସର୍ବଦା ନିଜର ସମାସ୍ୱନ୍ଧି ଭାବେ ବ୍ୟବହାର ଦେଖାଇ ଆସିଛନ୍ତି । ମାତ୍ର ସ୍ୱାମୀ ଯେତେବେଳେ ହସି ହସି କହନ୍ତି, ତୁମେ ମୋଠାରୁ ଆଠବର୍ଷ ସାନ ଜାଣିଛ ? — ସେତେବେଳେ ତାଙ୍କ ମୁହଁଟି ଏତେ ସୁନ୍ଦର ଦିଶେ ଯେ ଅନୁରାଧାଙ୍କ ଦେହ ଓ ପ୍ରାଣରେ ଗୋଟାଏ କନ୍ୟା ସୁଲଭ ଶିହରଣ ଖେଳିଯାଏ । ସ୍ୱାମୀଙ୍କ କାନ୍ଧରେ ମୁହଁ ମାଡ଼ି ଆପଣରେ ଓହ୍ଲାଇ ପଡ଼ିବାକୁ ମନ ହୁଏ ତାଙ୍କର । ସତେ କି ତାଙ୍କର ବାପା ବସିଛନ୍ତି !! ବହୁ ଦିନରୁ ବାପା ମରିଯାଇଛନ୍ତି— ତାଙ୍କର ମୁହଁ ମଧ୍ୟ ଆଉ ମନେ ନାହିଁ ତାଙ୍କର । କିନ୍ତୁ ବାପାଙ୍କ କଥା ଭାବିଲେ ମନରେ ସେ କନ୍ୟାଭାବ ଏବେ ବି ଆସେ । ବାପମାନେ ମରିଯାନ୍ତି । କନ୍ୟାମାନେ ମା' ଜେଜେମା ହୋଇ ବୁଢ଼ୀ ହୋଇଯାନ୍ତି । ମାତ୍ର କନ୍ୟାଭାବ ମରେ ନାହିଁ । ବାପାଙ୍କ ସ୍ମୃତି ମନ ଭିତରେ ଜେଗି ଉଠିଲେ କନ୍ୟାଭାବ ପୁଣି ଫେରି ଆସେ ଗୋଟାଏ ସତୁରି ବର୍ଷର ଜେଜେମା ଭିତରେ ବି ।

ସ୍ୱାମୀଙ୍କୁ ପୁଅଭଳି ପରିଚର୍ଯ୍ୟା କରିବାରେ, ଶାସନ କରିବାରେ, ଗେଲ କରିବାରେ ଗୋଟାଏ ଚମତ୍କାର ଆମୋଦ ଅଛି ନିଶ୍ଚୟ । ମାତ୍ର ସ୍ୱାମୀ ଯେତେବେଳେ କ୍ଷଣକ ପାଇଁ ହେଉ ପଛେ ବାପାଭଳି ଦିଶିଯାନ୍ତି ବା ମନକୁ ଲାଗିଯାନ୍ତି, ସେତେବେଳେ ତା'ର ପ୍ରତିକ୍ରିୟା ହୁଏ ଆଉ ପ୍ରକାରେ । ଗୋଟାଏ ହିଲ୍ଲୋଳ ଭାବ କେମିତି ନାଭିଠାରୁ ମୁଣ୍ଡଯାଏ ସଞ୍ଚରିଯାଏ—କଲ୍ଲୋଳିତ କରିଦିଏ ।'

କିନ୍ତୁ ଏକଥା ଅଲଗା । ଏ ପ୍ରକାର ଆନନ୍ଦ ତ ସବୁବେଳଥି ନୁହେଁ । ଅସଲ କଥା—ସ୍ୱାମୀ ତାଙ୍କର ଏବକୁ ଏବକୁ ଆଉ କୁଆଡ଼କୁ ଚାହୁଁନାହାନ୍ତି ଯେ ! ଆଉ କିଛି ଶୁଣୁନାହାନ୍ତି ଯେ ! ଏପରିକି ପିଲାମାନଙ୍କ ମୁହଁକୁ ବି ଚାହୁଁନାହାନ୍ତି । ପିଲାମାନଙ୍କ

କଥାବାର୍ତ୍ତା ବି ପୁରି ଶୁଣୁ ନାହାନ୍ତି ମନ ଦେଇ । କ'ଣ ହେଉଛି ତାଙ୍କର ? ସେ କ'ଣ ସତକୁ ସତ ବୟସ ଉପରେ ଖୁବ୍ ସଚେତନ ହୋଇ ଉଠୁଛନ୍ତି ? ସେ କ'ଣ ନିଜକୁ ଖୁବ୍ ଏକୁଟିଆ ମନେ କରୁଛନ୍ତି ? ସେ କ'ଣ ମୃତ୍ୟୁକଥା ଭାବୁଛନ୍ତି ? ନା— ଆଉ କ'ଣ ? ଆଉ ଗୋଟାଏ ପୃଥିବୀ କଥାରେ ତାଙ୍କର ମନ ବଳିଲାଣି କି ?

ଅବଶ୍ୟ ବ୍ୟବହାରରୁ ତାଙ୍କର ସମସ୍ତେ ଏକଥା କେବେ ଜାଣି ପାରିବେ ନାହିଁ । ତାଙ୍କଭଳି ଭଦ୍ର ଅତି ସାମାଜିକ ବ୍ୟକ୍ତି ଖୁବ୍ କମ୍ ଥିବେ । କିନ୍ତୁ ତାଙ୍କ ଆଖିକି ସ୍ୱାମୀଙ୍କର ମନର ଭାବ ଜଳ ଜଳ ହୋଇ ଦିଶୁଛି, ତା'ଛଡ଼ା ତାଙ୍କ ବ୍ୟତୀତ ଭଲ ଆଉ ତାଙ୍କର କିଏ ଅଛି ଯେ ? ଏ ପୃଥିବୀରେ ବି ଆଉ କିଏ ଅଛି ? ସମସ୍ତେ ସୁଖର ସାଥୀ । ଭାଇ, ବନ୍ଧୁ, ପୁତୁରା, ଝିଅଙ୍କ, ଏମାନେ ସମସ୍ତେ ଆପଣା ସ୍ୱାର୍ଥ ଲାଗି ମାୟା ଲଗାନ୍ତି । 'ଖାଲି ସେମାନଙ୍କ କଥା କାହିଁକି ପଡ଼ୁଛି ? ନିଜର ପୁଅ ଝିଅଙ୍କ କଥା ଏବେ କଣ ? ଏତେ ଏତେ ହେଲେଣି । ବାପର ମୁହଁକୁ ଚାହାନ୍ତି କେବେ ଚଣ୍ଡାଳ ଚଣ୍ଡାଳୀମାନେ ? କେବେ ଦିନେ ଭାବୁଛନ୍ତି— ବାପା ବୋଲି ଯାହାକୁ ଡାକୁଚ— ସେ କ'ଣ ଭାବୁଛି ? ସେ ଦୁଃଖ ପାଉଛି— ନା ସୁଖ ପାଉଛି ? ନା । ଚଣ୍ଡାଳ ଚଣ୍ଡାଳୀଙ୍କର ସେ ଆଡ଼େ କାହିଁକି ନଜର ପଡ଼ିବ । ସେମାନଙ୍କର ବହି ଦରକାର, ଶାଢ଼ୀ ଦରକାର, ଗହଣା ଦରକାର, ପୋଷାକ ଦରକାର, ବନ୍ଧୁ ଚର୍ଚ୍ଚା ଦରକାର । ମୋଟ ଉପରେ ଖାଲି ଟଙ୍କା ଦରକାର । ବାପାଙ୍କୁ କହିଲେ ଦେଲେ ହେଲା । ବାପା ସେତିକି ମଞ୍ଜୁର କରିଦେଲେ ହେଲା । ତେଣିକି ମାଆ ଦେବ ଟଙ୍କା । ବାପା ହାତରେ ସେତିକି ବି ନାହିଁ । ମାଆ ସହଜରେ ମଞ୍ଜୁର କରେ ନାହିଁ । ନାନାଦି ପ୍ରଶ୍ନ ପଚାରି ବିରକ୍ତ କରାଏ । ତା'ର ନାନା ସନ୍ଦେହ— ସେ ନାନା ହିସାବ ତଲବ କରେ । କୋଉ ଗଣେଶ ପୂଜାକୁ କିଏ ଟେରେଲିନ୍ ପୋଷାକ କିଣିଥିଲା— କୋଉ ଦଶହରାକୁ କିଏ ଶହେଟଙ୍କା ଶାଢ଼ୀଟିଏ କିଣିଥିଲା, ଚାରିମାସ ବି ଯାଇନାହିଁ । କାହାର ଆଲ୍‌ଜେବ୍ରା ବହି କିଣା ସରିଲାଣିତ କାହାର ମନ—ବ୍ୟାଙ୍କିଙ୍ଗ୍ ବହି କିଣା ହେବା ପାଇଁ ତିନିଥର ଟଙ୍କା ନିଆଗଲାଣି । କିଏ କୁଆଡ଼େ ଆଇନ ବହି କିଣିବା ନାଁରେ ଟଙ୍କା ନେଇ ସାଙ୍ଗକୁ ଧରି ହୋଟେଲରେ ଖାଉଛି ବା ସିନେମା ଯାଉଛି । ମାଆର ମନ ଏମିତି ନାନାଦି ସନ୍ଦେହରେ ପରିପୂର୍ଣ୍ଣ । ଅର୍ଥଶାସ୍ତ୍ରରେ ଅନର୍ସ ନେଇ ବି. ଏ ପଢ଼ୁଥିବା ମଝିଆଁ ଝିଅ କହେ—ମାଆ କେମିତି ମୁକ୍ତି ପାଇବ କେଜାଣି, ଏତେ କ୍ଲିଷ୍ଟ ମନ ଯାହାର ।। ଦର୍ଶନ ଶାସ୍ତ୍ରରେ ଏମ୍ ଏ ପଢ଼ୁଥିବା ବଡ଼ ମଝିଆଁ ପୁଅ କହେ—ମାଆ, ବିଶ୍ୱାସ କରିବାକୁ ସାଧନା କର ! ବିଶ୍ୱାସେ ମିଳଇ କୃଷ୍ଣ ତର୍କେ ବହୁଦୂର । ମାତ୍ର ସବାସାନ ପୁଅ କୁଆଡ଼େ ମାଆକୁ ଆଛା'କରି ଚିଡ଼ା କାଟେ । ସବୁଦିନେ କୁଆଡ଼େ ସେ ମାଆର ଟ୍ରଙ୍କ୍ ଫିଟାଇ ଟଙ୍କା ନିଏ— ଆଉ ସାଙ୍ଗମାନଙ୍କୁ ଧରି ଚାଇନା ହୋଟେଲରେ ଗପ ମାରେ । ମଝିଆଁ ଝିଅ ଅନୁଯୋଗ

କରେ—ଏଭଳି ସ୍ୱେର ପିଲା ଉପରେ ମାଆର ଅଗାଧ ବିଶ୍ୱାସ । କାରଣ ସେ କୁଆଡ଼େ ବୁଢ଼ୀ ହେବାଯାଏ ମାଆ ଯାଙ୍ଗେ ଗେଲ ହେଉଛି !

ପିଲାମାନଙ୍କ କଥା ଭାବି ହସିବେ ନା କାନ୍ଦିବେ, ଅନୁରାଧା କିଛି ଭାବି ପାରନ୍ତି ନାହିଁ । ସେମାନେ ତାଙ୍କର ମାଆଙ୍କୁ ବୁଝିଛନ୍ତି—ନା ବୁଝିଛନ୍ତି ବାପାଙ୍କୁ । ଏଥିରେ ଅବଶ୍ୟ ପିଲାମାନଙ୍କୁ ଦୋଷ ଦେଇ ସେମାନଙ୍କୁ ପରିକାର ଦେଇ ହୁଏନା । ଏପରି ମଧ୍ୟ ହୋଇପାରେ - ପିଲାମାନେ ଯାହା ବୁଝିଛନ୍ତି ବା ଯେତିକି ବୁଝିଛନ୍ତି— ତାହା ସେମାନଙ୍କ ପାଇଁ ଯଥେଷ୍ଟ । କିନ୍ତୁ ଏତିକି କଥା ଯେ— ପିଲାମାନଙ୍କ ଉପରେ ଭରସା କରିବା ଚଳେ ନାହିଁ ।

କିନ୍ତୁ ଯାହା ଉପରେ ଭରସା କରିବା କଥା— ତାଙ୍କ ଆଖିକୁ ତ କିଛି ଦିଶୁନାହିଁ ତାଙ୍କ କାନକୁ ମଧ୍ୟ ଆଉ କିଛି ଶୁଭୁନାହିଁ । କଅଣ ହେଇଛି ତାଙ୍କର ? ଦେହରେ ଏମିତି କିଛି ଖରାପ ହୋଇନାହିଁ । ବୟସକୁ ଚାହିଁ ସ୍ୱାସ୍ଥ୍ୟ ଯେତିକି ଯାହା ରହିବାର ରହିଛି । ତେବେ କ'ଣ ଆଉ ? ଅନୁରାଧା ସେଇ କଥା ଭାବି ଭାବି କିଛି କୂଳ କିନାରା ପାଇଲେ ନାହିଁ । ଶଶୀକାନ୍ତ ବାବୁଙ୍କର ଅନ୍ତରଙ୍ଗ ବନ୍ଧୁ ବିଶିଷ୍ଟ ମନସ୍ତତ୍ତ୍ୱବିଦ୍ ଡକ୍ଟର ଶିବପ୍ରସାଦ ମିଶ୍ର କହନ୍ତି, ଶଶୀକାନ୍ତଙ୍କୁ ସନ୍ନ୍ୟାସ ରୋଗ ହୋଇଛି । ତାଙ୍କୁ କଲିକତା ପଠାଇ ଦିଅନ୍ତୁ । କିଛିଦିନ ହୋଟେଲ କାବାରେଟ୍ ମାନ ବୁଲିଆସୁ । ଜୀବନ ପ୍ରତି ସରାଗ ପୁଣି ତାର ଫେରି ଆସିବ । ଅନୁରାଧା କିଛି ବୁଝି ପାରନ୍ତି ନାହିଁ । ବୁଝି ପାରନ୍ତି ନାହିଁ ଠିକ୍ ନୁହେଁ, କିନ୍ତୁ କଥାଟା ମନକୁ ପାଏ ନାହିଁ । ସେ କ'ଣ ଆପଣା ସ୍ୱାମୀଙ୍କୁ ଆଜିଯାଏ ବୁଝି ନାହାନ୍ତି ? ମଣିଷକୁ ବୁଝିବା ଲାଗି ପ୍ରେମଠାରୁ ଭଲ ଆଉ ଅଧିକ କ'ଣ ଉପାୟ ଅଛି ?

ବହୁଦିନ ଧରି ମନମାରି ରହିଲେ ଅନୁରାଧା । ସ୍ୱାମୀଙ୍କର ଏକୁଟିଆପଣ ଯେମିତି ତାଙ୍କୁ ମାଡ଼ି ବସିଲା । ସତେ କି ସ୍ୱାମୀ ନୁହଁ, ସେ ନିଜେ ହୋଇ ଉଠିଛନ୍ତି ଏକୁଟିଆ, ନିତାନ୍ତ ଏକୁଟିଆ । ତାଙ୍କର ଯେପରି ଏ ପୃଥିବୀରେ ଆଉ କେହି ନାହିଁ । ଏତେ ଦିନ ଧରି ଯେଉଁ ସଂସାରଟିକୁ ସେ ନିଜ ହାତରେ ଗଢ଼ିଥିଲେ ସେହି ସଂସାରର କୋଳାହଳ ସଙ୍ଗେ ନିଜର ସ୍ୱର ମିଶାଇ ଦେଇଥିଲେ । ଆଜି ଯେପରି ସେ ସ୍ୱର ପୃଥକ୍ ହୋଇ ଯାଉଛି; ପୃଥକ୍ ହୋଇ ବାଜୁଛି । ଆପଣର ନିଜ'ନ ସ୍ୱରଟି ଯେପରି ଆପଣା ପାଖକୁ ଫେରି ଆସୁଛି ବାରମ୍ବାର !

ସେଦିନ ଅନୁରାଧା ସ୍ୱାମୀଙ୍କୁ ଚାହିଁ ଦେଇ ଦେଇ ପ୍ରସ୍ତାବ ଦେଲେ, ଚାଲ ! ଆଜି ଟିକିଏ ବୁଲିଯିବା ।

କୁଆଡେ ?

ସହର ଛାଡ଼ି ଟିକିଏ ଦୂରକୁ । ସେଇ ଯେଉଁ ଏକୁଟିଆ ପାହାଡ଼ଟା ଦେଖାଯାଏ, ଆମେ ଗାଡ଼ିରେ ଆସିଲା ବେଳେ ବାଁ ପଟେ — କ'ଣ କି ତା' ନାଁ, କେଡ଼େ ସୁନ୍ଦର ନାଁ-ଟିଏ ମ ?

କରୁଣ ପାହାଡ଼ ! ଶଶୀକାନ୍ତବାବୁ ମନେ ପକାଇ ଦେଲେ । 'କଣ ହେବ ସେଠିକି ଗଲେ ? ସେଠି କିଛି ଦେଖିବାକୁ ନାହିଁ ଯେ ! ମନ୍ଦିର ଫନ୍ଦିର ଗୁମ୍ଫା ଫୁମ୍ଫା କିଛି ନାହିଁ ।

କିଛି ନଥାଉ । ମୋର କାହିଁକି କେତେଦିନ ହେଲାଣି ମନ ହଉଛି, ସଞ୍ଜବେଳେ ଆମେ ଦୁ'ଜଣ ଯାଇଁ ସେଠି ବସନ୍ତେ !! ଆମେ ଦୁ'ଜଣ ଇ ଯିବା, ସାଙ୍ଗରେ ଆଉ କାହାକୁ ନେବା ନାହିଁ ।

ଶଶୀକାନ୍ତବାବୁ ଟିକେ ହସିଲେ ଉଦାସୀଙ୍କ ହସ । ତା'ପରେ ରାଜି ହୋଇଗଲେ ।

ଶୀତଋତୁ ତଥାପି ଆସି ନଥିଲା । ତେବେ ସୂର୍ଯ୍ୟାସ୍ତ ପୂର୍ବରୁ ଚତୁର୍ଦ୍ଦିଗରେ ଏକ ସୁନା ହୋଣପିଆ ଝପ୍‌ସର ଆସ୍ତରଣ ପଡ଼ି ଯାଇଥିଲା । ଗାଡ଼ିଟିକୁ ରାସ୍ତା କଡ଼ରେ ଥୋଇ ସେମାନେ ବିଲ ଭିତର ଦେଇ ସେଇ ପାହାଡ଼ଟି ଆଡ଼କୁ ଚାଲିଲେ । ଫଳନ୍ତ ଧାନଗଛ ସବୁ ସୁନେଲି ଝଲରେ ଖୁବ ଚମତ୍କାର ଦିଶୁଥାନ୍ତି । ଠାଏ ଠାଏ କିଆରୁ ଛାଡ଼ୁଆ ପାଣି ଚବ ଚବ ହୋଇ ଗୋଟାଏ ବିଲରୁ ଆଉ ଗୋଟିଏ ବିଲ ଆଡ଼କୁ ବୋହି ଯାଉଥାଏ । ଅଣ ଓସାରିଆ ହିଡ଼ ଉପରେ ଚାଲୁ ଚାଲୁ ବେଳେ ବେଳେ ଅନୁରାଧାଙ୍କର ଅନଭ୍ୟସ୍ତ ପାଦ ହିଡ଼ରୁ ଖସି ଯାଉଥାଏ । ବିଲର କାଦୁଅ ଭିତରେ ଗଳି ପଡ଼ୁଥାଏ ପାଦ । ସେ ଖୁବ୍ ଜୋର୍‌ରେ ଚାଲିପାରୁନଥାନ୍ତି । କ୍ରମେ ବିଲତକ ପାର ହୋଇ ସେମାନେ ପାହାଡ଼ର ତଳ ଦେଶରେ ପହଞ୍ଚିଲେ । ପାହାଡ଼ଟି ଦୂରରୁ ଯେତେ ଲଣ୍ଡା ଦେଖାଯାଏ, ପ୍ରକୃତରେ ବର୍ତ୍ତମାନ ସେତେ ସେମିତି ଦିଶୁନାହିଁ । ସବୁଜ ଗଛ ଲତାରେ ଭର୍ତ୍ତି ହୋଇ ଯାଇଛି ପାହାଡ଼ଟି । ଏଠି ସେଠି ଗୋଟେ ଦି'ଟା ବଡ଼ ବଡ଼ ଗଛ, କରଞ୍ଜ, ବର, ଚାକୁଣ୍ଡା, ବଣୁଆ ଆମ୍ବ । ଏଇ ପାହାଡ଼ଟିର ଆରପଟକୁ ଯେଉଁ ଲମ୍ବା ପାହାଡ଼ ଶ୍ରେଣୀଟି ଉତ୍ତରରୁ ଦକ୍ଷିଣ ଆଡ଼କୁ ଲମ୍ବି ଯାଇଛି, ସେଥିରେ ସରକାର ନୂଆ ନୂଆ ଶାଳ ପିଆଶାଳ ଗଛମାନ ଲଗାଇଛନ୍ତି । ସୁସ୍ଥ ସବଳ କିଶୋର କିଶୋରୀଙ୍କ ପରି ସେ ଗଛ ଗୁଡ଼ିକ ଖୁବ୍ ବଢ଼ିଆଲି ଦିଶୁଛନ୍ତି ଦୂରରୁ । କ୍ରମେ ସୂର୍ଯ୍ୟାସ୍ତର ଛାଇ ପାହାଡ଼ଟିର ସମ୍ମୁଖ ପାଖକୁ ଘୋଡ଼ାଇ ପକାଇଲା ।

ଚାରିଆଡ଼େ ଘେରି ଆସିଲା ଗୋଟାଏ ମଧୁର ନିର୍ଜନତା । ଅଳ୍ପ ଦୂରରେ ଗୋରୁ ମଇଁଷି ଗୋଠଟିଏ ଫେରୁଥିଲେ । ସେମାନଙ୍କ ଭିତରୁ କାହା କାହା ବେକରେ ଓହଳିଥିବା କାଠଟି ପାବୁ ଗୁରୁ ଗୁରୁଧ୍ୱନି ସତେ କି ବହୁ ଦୂରଦିଗନ୍ତର କିଛି ଗୋଟାଏ

ଅବୋଧ ସନ୍ଦେଶକୁ ବାରମ୍ବାର ବ୍ୟକ୍ତ କରିବାକୁ ଚେଷ୍ଟା କରୁଥିଲା । ତରୁଙ୍ଗିର ନିର୍ଜନତାକୁ ଏହି ଧ୍ୱନି ବେଶ୍ ମହନୀୟ ଓ ରହସ୍ୟମୟ ମଧ୍ୟ କରୁଥିଲା । ଭଦଭଦଳିଆ ଚଢ଼େଇଟିଏ କାହିଁ ଉଡ଼ିଆସି ବସିଗଲା ପାଖରେ ଥିବା ଗଛର ଡାଳଟିରେ । ତା'ପରେ କଣ ଭାବି ପୁଣି କେଜାଣି କୁଆଡ଼କୁ ଉଡ଼ି ଚାଲିଗଲା ।

ଅନୁରାଧା ସ୍ୱାମୀଙ୍କ ହାତଧରି ଧୀରେ ଧୀରେ ପାହାଡ଼ ଆଡ଼କୁ ଅଗ୍ରସର ହେଉଥିଲେ । ଏଇ ଏକୁଟିଆ ଛୋଟ ପାହାଡ଼ଟି ମୂଳ ପାହାଡ଼ ଶ୍ରେଣୀରୁ ବାହାରି ଆସି ସତେ କି ଏଠି ପୃଥକ୍ ହୋଇ ବସି ତପସ୍ୟା କରୁଛି ! ପାହାଡ଼ ଉପରେ ସରୁ ମଣିଷଚଲା ରାସ୍ତାଟିଏ ସିଧା କିଛି ବାଟ ଉଠି ପୁଣି ଡାହାଣ ଆଡ଼କୁ ବଙ୍କେଇ ଯାଇଛି । ପାଖରେ ଛୋଟ କୂଦଟିଏ । ଶଶୀକାନ୍ତବାବୁ କହିଲେ, ଏଇ କୂଦ ଉପରେ ଟିକିଏ ବସିବା କି ?

ଅନୁରାଧା ମନେ ମନେ ତାହାହିଁ ଚାହୁଁଥିଲେ । ପାଖାପାଖି ହୋଇ ଦୁହେଁ ବସି ରହିଲେ ସେଇ କୁଦ ଉପରେ । ଶଶୀକାନ୍ତ ପକେଟରୁ କେତୋଟି ଚକୋଲେଟ୍ କାଢ଼ି ସ୍ତ୍ରୀଙ୍କ ହାତକୁ ନେଲେ ଏବଂ ନିଜେ ପାନଡ଼ବାଟି କାଢ଼ି ଖଣ୍ଡିଏ ପାନ ଖାଇଲେ । କ୍ରମେ ଅନ୍ଧାର ଘନେଇ ଆସିଲା । ଚାରିଆଡ଼େ ଘେରିଗଲା ଏକ ନିସ୍ତବ୍ଧ ନିର୍ଜନତା । ଏଇ ପାହାଡ଼ଟିର ଆରପଟେ ଚାଲିଯାଇଛି ଜାତୀୟ ରାଜପଥ । ତେଣୁ ରାଜପଥରେ ଗମନା ଗମନ କରୁଥିବା ଯାନବାହାନ ଗୁଡ଼ିକର କୋଳାହଳ ବା ଆଲୋକ ଏ ପଟକୁ କିଛି ଶୁଭୁନାହିଁ କି ଦିଶୁନାହିଁ । ମୁଣ୍ଡ ଉପରେ ବିସ୍ତୀର୍ଣ୍ଣ ହୋଇ ରହିଛି ଆକାଶ । ଆଉ ଲକ୍ଷ ଲକ୍ଷ ତାରା ସେହି ଆକାଶରେ ମିଞ୍ଜି ମିଞ୍ଜି ହୋଇ ଜଳୁଛନ୍ତି । ଚାରିଆଡ଼ ସତେକି ଧ୍ୟାନସ୍ଥ ହୋଇ ରହିଲାଣି । ଅଦୂରସ୍ଥ ଗୋଟାଏ କଣ୍ଟାଝୋପ ଭିତରୁ ଗୋଟାଏ ବଣ-ଚଢ଼େଇ ମଧ୍ୟେ ମଧ୍ୟେ ବୋବାଇ ଉଠୁଛି । ସ୍ୱାମୀ ସ୍ତ୍ରୀ କେହି କାହାକୁ କିଛି କଥା କହୁ ନ ଥାନ୍ତି । ଝୁଲୁ ଝୁଲୁ ହୋଇ ଖୁବ୍ ଧୀରଭାବେ ପବନ ମଧ୍ୟେ ମଧ୍ୟେ ବହି ଆସୁଥାଏ । ଅଳ୍ପ-ଦୂରରୁ ଧାନବିଲ ଭିତରୁ ଗୋଟାଏ ଅପୂର୍ବ ବାସନା ଭାସି ଆସୁଥାଏ । ଶଶୀକାନ୍ତ ଅନୁରାଧାଙ୍କ କାନ୍ଧରେ ହାତ ପକାଇ ବସିଥାନ୍ତି । ଦୁହେଁ ଏମିତି ଚୁପ୍‌ଚାପ୍ କେତେ-ବେଳେ ଯାଏ ବସି ରହିଲେ ସେ ସମ୍ବନ୍ଧେ ସେମାନଙ୍କର ଖିଆଲଇ ନଥିଲା ।

ଅନୁରାଧା ପୂର୍ବରୁ ଭାବି ଭାବି ଆସିଥିଲେ । ସେ ସ୍ୱାମୀଙ୍କୁ ନିର୍ଜନରେ ପାଇ ବହୁତ କଥା କହିବେ । ତାଙ୍କର ସ୍ୱାମୀଙ୍କ ଉପରେ ବହୁ କାଳରୁ ଲଦି ହୋଇଥିବା ବହୁ ଅନୁଯୋଗ ସେ ଆଜି ତାଙ୍କ ଆଗରେ ଅଜାଡ଼ି ଦେବେ । ଆଜି ସେ ତାଙ୍କୁ ନିର୍ଜନରେ ପାଇ ତାଙ୍କର ବହୁଦିନର ପୁଞ୍ଜୀଭୂତ ଅଭିମାନର ବୋଝ ତାଙ୍କରି ଉପରେ ଢାଳିଦେବେ । ସେ କହିବେ—କାନ୍ଦି କାନ୍ଦି ସ୍ୱାମୀଙ୍କ ଆଗରେ ଅନୁଯୋଗ କରି କହିବେ— ଆଗୋ ! ତୁମେ

ମତେ ଏଇ କେତେ ବର୍ଷଧରି ନିଷ୍ଠୁର ତୁମ ମନରୁ ଦୂରେଇ ଦେଲଣି । ତୁମେ ନିଜେ ଏକୁଟିଆ ହୋଇଯାଇ, ମତେ କେତେ ଏକୁଟିଆ କରି ପକେଇଲଣି ତୁମେ ଜାଣ ? ଏକଥା କଣ ତୁମର ଉଚିତ୍ ହେଉଛି ? ତୁମେ କ'ଣ ସତରେ ଏକୁଟିଆ ? ମୁଁ ତା' ହେଲେ ତୁମର କେହି ନୁହେଁ ? ମୁଁ ତୁମର କେବଳ ଅଧବାଟର କ୍ଷଣିକ ସାଥୀ ?

ସେହିପରି ମଧ୍ୟ ଭାବିଥିଲେ ଶଶୀକାନ୍ତ; ଆଜି ସେ ନିର୍ଜନରେ ଅନୁରାଧାଙ୍କୁ ସବୁ କଥା ବୁଝାଇ ଦେବେ । ଯଦିଓ ସେ ତାଙ୍କଠାରୁ ଆଠବର୍ଷ ସାନ, ତଥାପି ଆଜି ଅନୁରାଧାଙ୍କୁ ସେ ନିଷ୍ଠୁର ଗୋଟିଏ ବୟସ୍କ-ସୁଲଭ ଜ୍ଞାନୀ ସୁଲଭ ଅଭିଜ୍ଞତାରେ ଉଦ୍‌ବୁଦ୍ଧ କରିଦେବେ । ସେ କହିବେ—ଅନୁରାଧା ! ଏ ଜଗତ ଏହିପରି । ଏ ଜଗତରେ କେହି ସାଥୀ ହୋଇ ବେଶୀବାଟ ଯାଇ ପାରିବେ ନାହିଁ । କୌଣସି ଗୋଟିଏ ଜାଗାରେ ପରସ୍ପର ଛଡ଼ାଛଡ଼ି ହୋଇଯିବାକୁ ସମସ୍ତେ ବାଧ୍ୟ । ନା— ନା ଖାଲି ମୃତ୍ୟୁ ନୁହେଁ —ଏମିତି ମଧ୍ୟ ମଣିଷମାନେ ପରସ୍ପରଠାରୁ ଦୂରେଇ ଯିବାକୁ ବାଧ୍ୟ, ବଞ୍ଚିଥିବା ବେଳେ ବି ତୁମେ ଏତେକ ସୁନାପିଲାଙ୍କ ଭଳି ବୁଝିନିଅ । ଆଉ ଏହି ନିଦାରୁଣ ଅଥଚ ଅନିବାର୍ଯ୍ୟ ବିଧାନଟିକୁ ମାନିନେଇ ତୁମେ ତୁମର ଏକୁଟିଆ ଚାଲିବାକୁ ଅଭ୍ୟାସ କର । କାହାଉପରେ ଅଭିପରେ ଅଭିମାନ କର ନାହିଁ—କାହାଠାରୁ କିଛି ପ୍ରତ୍ୟାଶା କର ନାହିଁ । ଅଭିମାନ ବା ପ୍ରତ୍ୟାଶା ଗେଟିଏ ନିତାନ୍ତ ଅପରିପକ୍ୱ ପିଲାଳିଆ ମିଜାଜ୍‌ର ପ୍ରତିକ୍ରିୟା ।

ହୁଏତ ସ୍ୱାମୀ ସ୍ତ୍ରୀ ଦୁଇଜଣ ପରସ୍ପର ମନକଥା ପରସ୍ପରକୁ କହିଥା'ନ୍ତେ । ଏହି ନିର୍ଜନ ପରିବେଶକୁ ମୁଖରିତ କରି ଦୁଇଟି ପ୍ରାଣୀ ହୁଏତ ବହୁକାଳ ଯାଏ, ଆପଣା ଆଗରେ ମାନସିକ ପ୍ରତିକ୍ରିୟାକୁ ଉଚ୍ଚ ସ୍ୱରରେ ପ୍ରକାଶ କରିଥାନ୍ତେ । ହୁଏତ କିଛି କିଛି ଜୀବନ ଦର୍ଶନର କୋଳାହଳମୟ ବ୍ୟାଖ୍ୟାନ ଚାଲିଥାନ୍ତା ହୁଏତ କିଛି ନାଟକୀୟ ଉକ୍ତି ପ୍ରତ୍ୟୁକ୍ତି ବା ନାଟକୀୟ ଆଳାପ ବିଳାପ ବହୁକାଳଯାଏ ଚାଲିଥାନ୍ତା ।

ମାତ୍ର କେମିତି କେଜାଣି ଦୁଇଜଣଯାକ ଚୁପ୍‌ଚାପ୍ ବସି ରହିଲେ । ଦୁହେଁ ଦୁହିଁଙ୍କ କାନ୍ଧ ଉପରେ ହାତପକାଇ ନୀରବରେ ବସି ରହିଲେ ବହୁ ସମୟ । ଉଁ ନାହିଁ କି ଚୁଁ ନାହିଁ । ରାତି ମଧ୍ୟ ବହୁତ ଘନେଇ ଆସିଥିଲା । ଘନେଇ ଆସିଥିଲା ମଧ୍ୟ ରାତିର ଅନ୍ଧକାର । କ୍ଷୁଦ୍ର ପାହାଡ଼ୀ ଅରଣ୍ୟର ସାମାନ୍ୟତମ କୋଳାହଳ ମଧ୍ୟ ନୀରବ ହୋଇ ଆସିଥିଲା । ଆକାଶରେ ଅସଂଖ୍ୟ ତାରା ନିସ୍ତବ୍ଧ ହୋଇ ମିଞ୍ଜି ମିଞ୍ଜି ହୋଇ ଜଳୁଥିଲେ । ପବନ ବହୁ ଥିଲା ଧୀରେ ଧୀରେ, ଏତେ ଭଦ୍ରଭାବରେ ଯେ ଗଛଲତାର ସ୍ପର୍ଶମଧ୍ୟ ସାମାନ୍ୟତମ ଶବ୍ଦ କରୁ ନ ଥିଲା । କି ଆଶ୍ଚର୍ଯ୍ୟ ! ଏତେ ନୀରବତା ଆଉ ନିସ୍ତବ୍ଧତା କ'ଣ ସତରେ ଏ ପୃଥିବୀରେ ସମ୍ଭବ ? ଚାରିଆଡ଼େ ସବୁ ଦୃଶ୍ୟ ଅସ୍ପଷ୍ଟ ଦିଶୁଥିଲେ —ଆଉ ସତେକି କେଉଁ ପରମ ପୂଜନୀୟ ମହାଯୋଗୀଙ୍କର ଆଗମନକୁ ଏକ ନିସ୍ତବ୍ଧ ସଂଭ୍ରବ୍ଧ ସଂଭ୍ରମତାର ସହିତ ବିନୀତ ଚିତ୍ତରେ ଅପେକ୍ଷା କରି ରହିଥିଲେ ।

ସେହିପରି ମଧ୍ୟ ବସି ରହିଥିଲେ କିମ୍ବା ଅପେକ୍ଷା କରି ରହିଥିଲେ ଏ ପୃଥିବୀର ଧୂଳିଟି ପ୍ରବୀଣ ନରନାରୀ—ଯେଉଁମାନେ ପରସ୍ପରକୁ ବୁଝିବାକୁ ଓ ବୁଝାଇବାକୁ ଏତେଦୂର ଛୁଟିଆସିଥିଲେ ଏହି ନିକାଞ୍ଚନ ପରିବେଶ ଭିତରକୁ । କେତେ ସମୟ ଏମିତି କଟିଲା ବୁଝି ହେଲା ନାହିଁ । ମାତ୍ର ସତକୁ ସତ ସେ ଆସିଥିଲେ—ଆସିଥିଲେ ସେହି ରାଜାଧିରାଜ ପରମ ପୂଜନୀୟ ମହାଯୋଗୀ । ସେହି ହେଉଛନ୍ତି ଜଗତର ସମସ୍ତ ଗଭୀର ଅନୁଭୂତି ବା ଉପଲବ୍ଧିର ପ୍ରକାଶ ।

ଶଶୀକାନ୍ତ ଓ ଅନୁରାଧା ଉପଲବ୍ଧି କଲେ ସେହି ମହାନ୍ ଯୋଗୀ ପୁରୁଷଙ୍କୁ—ସେ ହେଉଛନ୍ତି ସ୍ୱୟଂ ନିସ୍ତବ୍ଧତା । ଯାହାଙ୍କର ଉପସ୍ଥିତିରେ ସବୁ ଗଭୀର ବସ୍ତୁ ଏକ ପରମ ଶାଳୀନତାରେ ଖୁବ୍ ଧୀରଭାବେ ପ୍ରକାଶ ଲାଭକରେ । ସେହି ଯୋଗୀ-ରାଜଙ୍କର ଅପର ନାମ କ'ଣ ପ୍ରେମ ?



# ଅରୂପର ରୂପ

ବ୍ରହ୍ମାନନ୍ଦ ପଣ୍ଡା

---

ଅପୂର୍ବ ସେ ମୁହଁ ଟୋକିଟି । ଆଜି ବଡ଼ ବିଚିତ୍ର ଓ ପ୍ରଗାଢ଼ ତାର ପ୍ରଭାବ ମୋର ଉପରେ । ଠିକ୍, କେବେ, କେଉଁ ମୁହୂର୍ତ୍ତରେ, ସେଇ ମୁହଁଟିକୁ ଦେଖିଲି ଆଜି ମନେ ନାହିଁ । ତେବେ ଏତିକି ନିଶ୍ଚୟ ମନେ ଅଛି, ବହୁବର୍ଷ ପୂର୍ବେ ପରିଣତ କୈଶୋର ଓ ପ୍ରଥମ ଯୌବନର ସନ୍ଧି ଭାଗରେ, କେଉଁ ଏକ ମଧୁ ମୁହୂର୍ତ୍ତରେ ସେଇ ମୁହଁଟିକୁ ଦେଖିବା ମୋ ପକ୍ଷରେ ଅବଶ୍ୟମ୍ଭାବୀ ହୋଇ ପଡ଼ିଥିଲା । ସେ ରୂପ ମୋର ଆଖିରେ ଲେଗି ହୋଇ ରହିଛି; ମୋର ବୁକୁରେ ଘର କରିଛି ।

ଜୀବନ ଯାତ୍ରା ପଥରେ ଏକାକୀ ପାନ୍ଥ ମୁଁ । ନୀଡ଼ର ଆକର୍ଷଣ ମୋର ନାହିଁ କିମ୍ବା ପଦ ଚିହ୍ନ ଲେଖି ଯିବାର ପ୍ରଲୋଭନ ମଧ୍ୟ ନାହିଁ । ପଥେ ପଥେ ଜୀବନର ବ୍ୟାପ୍ତି ଭିତରେ ଅନ୍ତରର ବିମୁକ୍ତି ମୁଁ ଖୋଜି ଖୋଜି ବୁଲେ । କିନ୍ତୁ ଆଶ୍ଚର୍ଯ୍ୟ ସେ ଦୁର୍ନିବାର ମୁହଁଟିର ଯାଦୁ । ଜୀବନ ଓ ପ୍ରକୃତିର ସବୁ କିଛି ରହସ୍ୟ ସଙ୍ଗେ ସେ ଯେପରି ମତେ ଜଡ଼ିତ କରିବାକୁ ଚାହେଁ ।

କଳନାଦିନୀ ଝରଣା ତୀରରେ, ଦର୍ପିତ ପର୍ବତ ଶୀର୍ଷରେ, ଶ୍ୟାମଳ ବନାନୀର ଗମ୍ଭୀର ନୀରବତାରେ ଅନ୍ତରୀକ୍ଷର ଅଗଣିତ ତାରକା ପୁଞ୍ଜରେ, ଶାନ୍ତ ସମୀରଣରେ, ନବମେଘ ଘର୍ଘରରେ, ଇନ୍ଦ୍ରଧନୁର ବର୍ଣ୍ଣାଳୀରେ, ଅରୁଣର ଅନୁରାଗରେ, ଚନ୍ଦ୍ରିକାର ସ୍ୱପ୍ନ ଅଭିଷେକରେ କଳକଣ୍ଠ କୂଜନରେ ପୁଷ୍ପର ପରିମଳରେ ମୁଁ ଦେଖିଛି ସେଇ ମୁହଁଟିର ମୋହିନୀ ।

କେଉଁ ଅନାଦି ଲଗ୍ନରୁ ଅଶାନ୍ତ ଆକାଂକ୍ଷାର ଅଭିବ୍ୟକ୍ତିରେ ଉଦ୍‌ବେଳ ସମୁଦ୍ରକର ଉତ୍ତାଳ ଦଳ ତରଙ୍ଗ ଭଙ୍ଗରେ, କ୍ଷିପ୍ର ଝଡ଼ର ଝଙ୍କାରରେ, ବନ୍ୟାର ବିପ୍ଳବରେ, ନିଶୀଥିନୀର ନିସ୍ତବ୍ଧତାରେ ହୁତାଶନର, ଉପଦ୍ରବରେ, ନିଦାଘର ନିଦାରୁଣତାରେ, ମରୁପ୍ରାନ୍ତରର ମରୀଚିକାରେ ମୁଁ ଦେଖିଛି ସେଇ ମୁହଁଟିର ମାୟା ।

ଶିଶୁ କାନ୍ଦଣା ଘରେ, ଶ୍ମଶାନ ଭୂମିରେ ବିଭବର ଉଚ୍ଛଳତାରେ, ବଞ୍ଚନାର ବିଡ଼ମ୍ବନାରେ, ଭୋଗର ଭଣ୍ଡାରରେ, ତ୍ୟାଗର ତପସ୍ୟାରେ ମୁଁ ଦେଖିଛି ସେଇ ମୁହଁଟିର ପ୍ରଶାନ୍ତି ।

ପୁରୀ ସାଗର ସୈକତ। ନିଜ ଭିତରେ ନିମଗ୍ନ, ଲୋକାଳୟର ବହୁ ଦୂରରେ ବସିଥିଲି ଏକାକୀ। ମାର୍ଗଶିର ପୂର୍ଣ୍ଣିମା ସୂର୍ଯ୍ୟ ସେଇ ମାତ୍ର ଅସ୍ତ ଯାଇଛି। ପଶ୍ଚିମ ଆକାଶର ରକ୍ତିମା ସାଗର ସୀମାକୁ ପ୍ଲାବିତ କରିଛି। ଚନ୍ଦ୍ର ଉଠି ଆସୁଛି ସାଗର ଗର୍ଭରୁ। ସକାଳର ସମ୍ପୃକ୍ତ ସିନ୍ଦୂରରେ ଗୋଟାଏ ପ୍ରକାଣ୍ଡ ପିଣ୍ଡ ତିଆରି କରି କେଉଁ ନିପୁଣ ଶିଳ୍ପୀ ପୂର୍ବାକାଶରେ ପ୍ରଦର୍ଶନୀ କରିଛି ଯେପରି। ମୋର ସମ୍ମୁଖ ସମୁଦ୍ରର କୁହେଳୀ ଆଚ୍ଛନ୍ନ ଜଳ ରାଶି ଉପରକୁ ସନ୍ଧ୍ୟାର ଅନ୍ଧକାର ନଇଁ ଆସିଛି। ଅପୂର୍ବ, ଅପୂର୍ବ ସେ ପ୍ରାଣ ପୁଲକଙ୍କର ଶ୍ରୀମକାନ୍ତ ଦୃଶ୍ୟ। ପ୍ରକୃତିର ଏଇ ରହସ୍ୟଘନ ସୌନ୍ଦର୍ଯ୍ୟକୁ ଆବୃତ କରି ହଠାତ୍ ସେଇ ମୁହଁଟି ମୋର ଦୃଷ୍ଟି ସମ୍ମୁଖରେ ଉଦ୍ଭାସିତ ହୋଇ ଉଠିଲା। ମୁଁ ଅଭିଭୂତ ହୋଇ ପଡ଼ିଲି।

ଏତେ କାଳକେ ଉପଲବ୍ଧି କରି ପାରିଲି ସେଇ ମୁହଁଟିର ଗୋପନ ରହସ୍ୟ। ସେ ଯେ ମୋର ଅନ୍ତରର ଅନନ୍ତ ପ୍ରେମ !



# ଅନାକର ଫୁଲ

କିଶୋରୀ ଚରଣ ଦାସ

---

ମୁଁ ମୋର ତିନିମହଲାରେ ଥିବା ଅଫିସ ପ୍ରକୋଷ୍ଠରୁ ନିମ୍ନର ପୃଥିବୀକୁ ଦେଖୁଥିଲି । କଲିକତାର ଚୌରଙ୍ଗୀ ଅଞ୍ଚଳରେ ଗୋଟିଏ ବଜାର ରାସ୍ତା, ଗୋଟିଏ ପଟେ ଦୋକାନ ଧାଡ଼ି, ଅପରପଟେ କର୍ପେରେସନ୍‌ର ପାର୍କ । ପାର୍କର ପ୍ରବେଶ ଦ୍ୱାରରେ ଟିଣ ପଟାର ତୋରଣ, ସେଥିରେ ଲେଖା ହୋଇଛି—ବିସୂଚିକା ପ୍ରତି ସାବଧାନ ।

ସେଦିନ ମୁଁ ପାର୍କକୁ ଲାଗି ରହିଥିବା ଫୁଟ୍‌ପାଥ୍ ଆଡ଼କୁ ଚାହିଁଥିଲି । ରାସ୍ତା ତୁଳନାରେ ଫୁଟ୍‌ପାଥ୍‌ର ଦୃଶ୍ୟବହୁଳତା କିଛି କମ୍ ନୁହେଁ । ସେ ସମସ୍ତ ଦୃଶ୍ୟକୁ କେବଳ ଦରିଦ୍ରତାର ଧାରା ବୋଲି କହି ମୁହଁ ଫେରାଇନେବା ଉଚିତ୍ ହେବ ନାହିଁ । ଯଥା ଦୁଇଜଣ ଲଙ୍ଗଳା ପିଲା ଯେତେବେଳେ ବିପରୀତ ଦିଗରୁ ଆସି ବଡ଼ ପେଟର ଲଢ଼େଇ କରନ୍ତି;, ତାକୁ କେମିତି ଗରିବର ଖେଳ ମନେକରି କାଟିଦେଇ ହେବ ? କିମ୍ବା ଧର ଯେତେବେଳେ ଗୋଟିଏ ତେର ଚଉଦ ବର୍ଷର ବାଳକ ଜଣେ ଭଦ୍ରମହିଳାଙ୍କ ପଛରେ ଅଙ୍ଗଭଙ୍ଗୀ କରି ଖତେଇ ହୁଏ ବା ବୁଢ଼ୀଟିଏ ମାଟି ସରାରେ ଗୁଁ ପିଉ ପିଉ ମନକୁ ମନ ହସେ, ସେତେବେଳେ ଦରିଦ୍ରତା ଫୁଟି ଉଠେ ନାହିଁ କି ଜଳି ଉଠେ ନାହିଁ, ବରଂ ସୃଷ୍ଟିର ପଣତରେ ଗଣ୍ଠି ହୋଇଯାଏ । ମୁଁ ବିସ୍ମିତ ହାସ ଦେଇ ମୋ ମନର ଟିପାଖାତାରେ ଲେଖି ରଖେ ।

କିନ୍ତୁ ମୁଁ ସେଦିନର ଅଭିନବ ଦୃଶ୍ୟ ପାଇଁ ପ୍ରସ୍ତୁତ ନ ଥିଲି ।

ମୁଁ ଗୋଟିଏ ସ୍ତ୍ରୀକୁ ଦେଖିଲି । ସେ ନିଃସନ୍ଦେହରେ ତରୁଣୀ । ଫୁଟ୍‌ପାଥ୍‌ର ତରୁଣୀ । ତା'ର ଛିଣ୍ଡା ମଇଳା ଶାଢ଼ୀ, ତାର ଅଖା ବାଉଁଶ ଘର, ତା' ପାଖରେ ଥୁଆ ହୋଇଥିବା ଦୁଇଖଣ୍ଡ ଆଲୁମିନିୟମ୍ ବାସନ ଇତ୍ୟାଦି ତା'ର ସ୍ଥିତି ସ୍ୱରୂପକୁ ଚିହ୍ନାଇ ଦେଉଥିଲା, ସେ ଗୋଡ଼ ଲମ୍ବାଇ ବସିଥିଲା । ଗୋଟିଏ ବୁଲାକୁକୁରକୁ ମଝିରେ ଡରାଉଥିଲା ଓ ଶୂନ୍ୟଦୃଷ୍ଟିରେ ବଜାରକୁ ଅନାଉଁଥିଲା । ମୁଁ ଅନୁମାନ କଲି ଯେ ସେ ତୃପ୍ତ ଅଛି, ବୋଧହୁଏ ନିକଟ ଅତୀତରେ ପେଟ ପୂରାଇ ଖାଇଛି ।

ତା ମୁହଁରେ କୋମଳତା ନ ଥିଲା । ମୋର ଦୃଢ଼ ଧାରଣା ହେଲା ଯେ ସେ ହଠାତ୍ ରାଗିଯାଇ ପାରେ ଓ ଗାଳି ବୃଷ୍ଟି କରିପାରେ । ପୁଣି ଦେଖିଲି ଯେ ତାର ପାଟି ନାଲି, ସେ ପାନ ଖାଇଛି ।

ତା ମୁହଁ କଦାପି ସୁଦୃଶ୍ୟ ନୁହେଁ—ଅଥଚ ବଳଶାଳୀ । ତାର ନାକ ଚେପ୍ଟା ନୁହେଁ, ଚଉଡ଼ା । ଧୂଳିଆ—କହରା ଆଖି, ତୀକ୍ଷ୍ଣ ଚାହାଣୀ । ପ୍ରଶସ୍ତ ଓଠର ଦୁଇଦିଗ ସାମାନ୍ୟ ଉପରକୁ ଉଠିଛି । ଟାଣୁଆ ଚିବୁକ । ସେ ମୁହଁ ବୁଲାଇ ପୁଣି ମେଞ୍ଚାଏ ପାନପିକ ଛୁଟିଦେଲା ଗୋଟାଏ ଶନ୍‌ପାର ଚକ ଉପରକୁ ଏବଂ କାଉ ପରି ଶବ୍ଦବିଶିଷ୍ଟ ଧ୍ୱନି କରି ପାଖଲୋକଙ୍କ ମଧ୍ୟରୁ କାହାକୁ ଡାକିଲା ।

କୁତ୍ସିତ, ଅଶ୍ଳୀଳ, ଅସୁନ୍ଦର ଇତ୍ୟାଦି ଅନେକ ବିଶେଷଣ ତା' ଉଦ୍ଦେଶ୍ୟରେ ପ୍ରୟୋଗ କଲି ।

ଯେତେବେଳେ ସାମାଜିକତା' ତା' ଦୋଷ ନୁହେଁ ବୋଲି କହି ମୋର ବିରାଗର ମାତ୍ରା ଊଣା କରିବାକୁ ଚେଷ୍ଟା କଲି ।

ମୁଁ ମୋର ଦୃଷ୍ଟି ବଦଳାଇବାକୁ ଯାଉଛି । ଏହି ସମୟରେ ଦେଖିଲି ଯେ ସେ ହାତ ପଛକୁ ନେଇ ତା'ର ନୁଖୁରା କେଶରେ ଗୋଟିଏ ଗଣ୍ଠି ପକାଇଲା ଓ ସେଥିରେ ଫୁଲଟିଏ ଖୋସିଦେଲା । ଫୁଲ ଅଜାଡ଼ିଆ କିନ୍ତୁ ସଜ, ରକ୍ତବର୍ଣ୍ଣ ଓ ବିରାଟ ।

ସେହିଠୁଁ ଆଶ୍ଚର୍ଯ୍ୟ ହେଲି ଓ ଭାବିଲି···କାହିଁକି ?

ଏ ପ୍ରଶ୍ନର ସହଜ ଉତ୍ତର ହୋଇପାରେ ଯେ ରମଣୀ ମାନେ ହିଁ ଫୁଲରେ ସାଜି ହେବାକୁ ଭଲ ପାଆନ୍ତି, ରାଜଦୁଲାରୀ ହେଉ ବା ଭିକାରୁଣୀ ହେଉ । ତେବେ ରାଜଦୁଲାରୀର ବିଳାସ ଓ ଭିକାରିଣୀର ଆସ୍ପୃହା ଦୁଇ ବିଭିନ୍ନ ବସ୍ତୁ । ଏ ସ୍ତ୍ରୀ ଲୋକର ଯୌବନ ଅଛି, କିନ୍ତୁ ଆଉ କିଛି ନାହିଁ । ତଥାପି ସେ ତା' ମୁଣ୍ଡରେ ଫୁଲ ଖୋସିଦେଲା । କାହିଁକି ?

କାରଣ ଖୋଜିବାର ଅଳସ ଲହରୀରେ ଭାସି ଭାସି ଯାଇ ମୁଁ ସୁଦୂରର କେଉଁ ଏକ ବେଳାଭୂମିରେ ପହଞ୍ଚିଲି, ଯେଉଁଠି ଇଉ-ଡି-କୋଲନର ଗନ୍ଧ ମୋତେ ଆକ୍ରମଣ କଲା । କ୍ରମଶଃ ମୋର ମନେ ହେଲା ମୁଁ ଆଉ ଜଣକୁ ଦେଖୁଛି, ଆଉ ଜଣେ ରମଣୀଙ୍କୁ, ତାଙ୍କର ଯୌବନ ନାହିଁ କିନ୍ତୁ, ଆଉ ସବୁ ଅଛି ।

........ତାଙ୍କ ନାଁ ମିସ୍ ଆଶା ସରକାର । କେତେ ବର୍ଷ ତଳେ ସେ ମୋର ପ୍ରତିଦିନର ସଂସାର ମଧ୍ୟରେ ଥିଲେ । ଅର୍ଥାତ୍ ପ୍ରାୟ ପ୍ରତିଦିନ ମୁଁ ତାଙ୍କୁ ମୋ ଅଫିସରେ ଦେଖୁଥିଲି—ନ ଦେଖି ଗତି ନ ଥିଲା, ସେ ଥିଲେ ମୋର ଜୁନିଅର ସହକର୍ମିଣୀ ।

ମୁଁ ଯେବେ ବଦଳି ହୋଇ ପ୍ରଥମେ ଦିଲ୍ଲୀରେ ପହଞ୍ଚିଲି, ପାଛୋଟିବା ପାଇଁ ଷ୍ଟେସନକୁ ଆସିଥିଲେ । ଅଫିସର ଅନ୍ୟମାନେ ଆସିଥିଲେ । ସେମାନେ କହିଲେ ଯେ ମିସ୍ ସରକାର ଆମ ପାଇଁ ରାନ୍ଧିବାରେ ବ୍ୟସ୍ତ ଅଛନ୍ତି ଏବଂ ଅନୁରୋଧ କରିଛନ୍ତି ଯେ ଆମେ ସିଧାସଳଖ ତାଙ୍କ ଘରକୁ ଯିବୁ, ସେଠି ରାତ୍ରି ଭୋଜନ ସାରି ଆମ ନୂଆ କ୍ୱାର୍ଟରକୁ ଯିବୁ । ମୋର ସାନଆପତ୍ତି ଶୁଣାଗଲା ନାହିଁ । ସେମାନେ ସମସ୍ତେ କହିଲେ ଯେ ନ ହେଲେ ସେ ମନ ଦୁଃଖ କରିବେ, ସେ ନିଜେ ଡାକି ନେଇ ଯାଇ ଥାଆନ୍ତେ, କିନ୍ତୁ ରନ୍ଧାର ଦାୟିତ୍ୱ ଆଉ କାହାକୁ ଦେଇ ହେବ ନାହିଁ ।

ମୁଁ ଅଭିଭୂତ ହେଲି । ନାରୀ-ଅଫିସରମାନଙ୍କଠାରେ ଏପରି ନାରୀ ସୁଲଭ ଗୁଣ କ୍ୱଚିତ ଦେଖିବାକୁ ମିଳେ । ବାଟରେ ଏକୁଟିଆ ପାଇ ମୋ ସ୍ତ୍ରୀ କହିଲେ — ଦେଖୁଛ ତୁମ ମିସ୍ ସରକାର ପକ୍କା ଘରଣୀ । କଣ ପାତ୍ର ଖୋଜୁଛନ୍ତି ନା ବୟସ ଚାଲିଗଲାଣି ?

ମିସ୍ ସରକାରଙ୍କୁ ଦେଖିବା ମାତ୍ରେ ହିଁ ସେ ତାଙ୍କ ପ୍ରଶ୍ନର ଉତ୍ତର ପାଇ ପାରିଥିବେ । ବୟସ ଚାଲିଗଲାଣି । ଆଶା ସରକାର କୌଣସି ପୁରୁଷର ଅପେକ୍ଷାରେ ନାହାନ୍ତି, ଯାହାକୁ ସେ ଖୁଆଇ ପିଆଇ ମଣିଷ କରିବେ । ସେ ସ୍ୱାଧୀନ, ସ୍ୱାମୀହୀନ, ସ୍ୱୟଂ ସମ୍ପୂର୍ଣ୍ଣ ହୋଇ ବଞ୍ଚି ରହିବେ ।

ବୟସ ଚାଲିଗଲାଣି କହିଲେ ମନେ ହେବ ଯେ ମସ୍ତ ଉପରୁ ଜଣେ ବଦାସ୍ତ ନେଇଗଲା, ଆଉ ଜଣେ ଆସିଛି । ଯେ ଆସିଛି ସେ ମଧ୍ୟ ତୃପ୍ତ, ସୁଶୋଭିତ, ଜୀବନର ଖେଳ ଖେଳି ପାରିବ; କିନ୍ତୁ ଏ କ୍ଷେତ୍ରରେ ଠିକ୍ ତାହା ନୁହେଁ । ନିରୀକ୍ଷଣ କଲେ ଦେଖି ହେବ ଯେ ମିସ୍ ସରକାରଙ୍କ ଯୌବନ ଉଚିତ ସମୟରେ ଏବଂ ଆପଣାଛାଏଁ ଚାଲିଯାଇ ନାହିଁ, ତାକୁ କିଏ ଟାଣି ଘୋଷାରି ନେଇ ଯାଉଛି । ତେଣୁ ସେହି ଘୋଷଡ଼ା ଚିହ୍ନ, ସେହି କୁଣ୍ଠିତ ବଦାସ୍ତର କେତେ ଗୋଟି ଲକ୍ଷଣ ରହିଯାଇଛି । ଯେପରିକି ସୂର୍ଯ୍ୟାସ୍ତ ପରେ ଚେନାଏ ଚେନାଏ କଳା ନାଲି ମେଘ ଆକାଶକୁ ଜଡ଼ାଇ ଧରିଛି, ତାକୁ ଅପରିଚ୍ଛନ୍ନ କରି ରଖିଛି । ତାଙ୍କ କପୋଳ ଉପରେ ଝୁଲିପଡ଼ୁଥିବା କେରାଏ କେଶ — କାହିଁକି ଅଛି ? କପୋଳ ‘ହେଟ୍’ ନାହିଁ । ତାଙ୍କ ସରୁ ଓଠ ଥରକୁ ଥର ଅଧାମେଲା ହୋଇ ଯାଉଛି; କିନ୍ତୁ ଓଠ କଳା ପଡ଼ିଗଲାଣି । ବହଳିଆ ଆଖିପତା ଘନ ଘନ ସଞ୍ଚାଳିତ ହେଉଛି । ହେଲେ ଚାହାଣିରେ ଜ୍ୟୋତି ନାହିଁ ।

ପ୍ରଥମ ଦେଖାରେ ମିସ୍ ସରକାର ମୋ ସ୍ତ୍ରୀଙ୍କୁ କୁଣ୍ଢାଇ ପକାଇଲେ; ବ୍ୟବହାରରେ ଜଣାଇ ଦେଲେ ଯେ ସେ ତାଙ୍କ ସାନ ଭଉଣୀପରି । କଥା କଥାକେ ଆଶ୍ୱାସନା ଦେଲେ ଯେ ସବୁ ସଜାଡ଼ି ହୋଇଯିବ । ନୂଆ ଜାଗାରେ ବସା ବାନ୍ଧିବାର

ଯାବତୀୟ ମୁଣ୍ଡବ୍ୟଥା, ପିଲାଙ୍କ ପାଇଁ ସ୍କୁଲର ବ୍ୟବସ୍ଥା; ନୂଆ ଫର୍ନିଚର ଯୋଗାଡ଼ କରିବା, ଉଚିତ୍ ଦରରେ ଜିନିଷ ପତ୍ର କିଣିବାର ଉପାୟ ଇତ୍ୟାଦି ସମସ୍ତ ଦାୟିତ୍ୱ ସେ ନିଜେ ତୁଲାଇ ନେବେ । ଶେଷକୁ ସେ କହିଲେ ( ଆଦେଶ ଅମାନ୍ୟ କଲାପରି ମୋ ଆଡ଼କୁ ଚାହିଁ ଦେଇ ) ସେ ଦଳର ଆନନ୍ଦ ଅତୁଳନୀୟ ।

ତାଙ୍କ ଆତିଥ୍ୟର ଅଜସ୍ର ପରିଶ୍ରମ ଆମ ଆଖିରେ ପଡ଼ିଲା । ବିଭିନ୍ନ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟରେ ଟେବୁଲଭରି ଯାଇଥାଏ, ଭୋଜଭାତ ପରି ମନେ ହେଉଥାଏ । ଅବଶ୍ୟ ରନ୍ଧାରେ କିଛି ବିଶେଷତ୍ୱ ଥିଲାପରି ଲାଗିଲା ନାହିଁ ଏବଂ ବେଳେ ବେଳେ ଭ୍ରମ ହେଲା ଯେ ଗୋଟିଏ ବ୍ୟଞ୍ଜନକୁ ଅକାରଣରେ ତିନିଥର ଗରମ କରା ହୋଇଛି । ଯାହା ହେଉ ବଡ଼ କଥା ହେଉଛି ଯେ ମିସ ସରକାର ପ୍ରାୟ ସବୁ କିଛି ନିଜ ହାତରେ ରାନ୍ଧିଥିଲେ । ଯେ କୌଣସି ବ୍ୟଞ୍ଜନ ଭଲ ହୋଇଛି ବୋଲି କହିଲେ ସେ ବିନୟ ମଧୁର ସ୍ୱରରେ ଗଦ୍ ଗଦ୍ ହେଉଥିଲେ — ଥ୍ୟାଙ୍କ୍ ୟୁ—ମୋର ଡ଼ର ହେଉଥିଲା ଆପଣଙ୍କୁ ଭଲ ଲାଗିବ କି ନାହିଁ—ମସଲା ଭାଜିଲା ବେଳେ ଫୋନ୍ ଆସିଲା.... ମାଂସ ନରମ ପଡ଼ିଲା ନାହିଁ ପଡ଼ିଲା ନାହିଁ.... ଲଙ୍କା ଗୁଣ୍ଡରେ ବାସ୍ନା ନାହିଁ ଇତ୍ୟାଦି ଏବଂ ପୁଣି ଥରେ ନେବା ପାଇଁ ବଳାଉ ଥିଲେ—ଦେଖୁଛି ଆପଣ କିଛି ଖାଉ ନାହାନ୍ତି; କେବଳ ମୋ ମନ ରଖିବା ପାଇଁ କହୁଥିଲେ....

ତାଙ୍କ ଘର ସଜାଇବାରେ ରୁଚି ଓ ସଂଯମ ଥିଲା । ଡ୍ରଇଁ ରୁମ୍‌ରେ ମାଝି ଯୋଡ଼ିଏ ତିନୋଟି ତୁଳୀ ଚିତ୍ର, ଶୋଇବା ଘରେ ତାଙ୍କ ସ୍ୱର୍ଗୀୟ ପିତାଙ୍କର ଫଟୋ, ଡାଇନିଂ ରୁମ୍, ଟେବୁଲ ଉପରେ ଗୋଟିକିଆ ମହମବତି, କାରୁକାର୍ଯ୍ୟ ବିହୀନ ଧୂସର ଗାଲିଚ୍ଚ ଇତ୍ୟାଦି ଜଣାଇ ଦେଉଥିଲା ଯେ ମିସ୍ ସରକାର ଅତିଶଯ୍ୟତା ପସନ୍ଦ କରନ୍ତି ନାହିଁ । ତାଙ୍କର ବହି ଥାକରେ ମଧ୍ୟ ବଚ୍ଛା ବଚ୍ଛା କେତୋଟି କ୍ଳାସିକାଲ୍ ଉପନ୍ୟାସ, ସେକ୍ସପିୟର, ମହାତ୍ମାଗାନ୍ଧୀ ଓ ନେହେରୁଙ୍କ ଜୀବନୀ ଓ ବଡ଼ ଅକ୍‌ସଫୋର୍ଡ଼ ଡିକ୍‌ସେନାରୀ ବ୍ୟତୀତ ବିଶେଷ କିଛି ଥିଲା ବୋଲି ମନେ ହେଉ ନାହିଁ । ସେ ମୋ'ତେ ବିଭିନ୍ନ ଲାଇବ୍ରେରୀର ସନ୍ଧାନ ଦେଲେ ଓ ଦୁଃଖୀକରି କହିଲେ ଯେ ଆଜିକାଲି ଅଫିସରେ ବେଶି କାମ ପଡ଼ୁଥିବାରୁ ସେ ଲାଇବ୍ରେରୀକୁ ଯାଇପାରୁ ନାହାନ୍ତି ।

ସେ ଥରେ ଦୁଇଥର ମୋର ଅତି ନିକଟ ହୋଇ ଯାତାୟାତ କଲେ । ସେତେବେଳେ ଅଗାଧୁଆ ଦେହ, ବାସି ଲୁଗା ଓ ଇଉଡ଼କୋଲନ୍‌ର ମିଶାମିଶି ଗୋଟିଏ ବାସ୍ନା ଆସିଲା । କେଜାଣି କାହିଁକି ମୋର ଧାରଣା ହେଲା ଯେ ଅବିବାହିତା ନାରୀ ଅଫିସର ମାନଙ୍କଠାରେ ଏହିପରି ବାସ୍ନା ଥାଏ; ରହିବା କଥା ।

ଘରକୁ ଫେରିବା ପରେ ମୋ ସ୍ତ୍ରୀ ମୁକ୍ତ କଣ୍ଠରେ ପ୍ରଶଂସା କଲେ । କହିଲେ, ତୁମ ମିସ୍‌ସରକାରଟି ବେଶ୍ ସାଦାସିଧା ଘରୋଇ ମେଲାପି । ନୁହେଁ ? ମୁଁ ଏକମତ

ହେଲ । ତାଙ୍କ ଓଠରେ ଲିପ୍‌ଷ୍ଟିକ୍ ନାହିଁ, ତାଙ୍କ ଭ୍ରୂଲତା କଳା ପେନ୍‌ସିଲ ସାହାଯ୍ୟରେ ଲମ୍ବି ଯାଇନାହିଁ, ତାଙ୍କ ପିନ୍ଧା ଶାଢ଼ୀ ଝଲମଲ ନୁହେଁ । ଯୌବନ ଗୁଣରୁ ଯେତକ ବଳାପଡ଼ୁଛି ତାହା ତାଙ୍କର ନିଜସ୍ୱ । ତାକୁ ହୁଏତ ଛାଡ଼ ଦେବାକୁ ସତ ବନ୍ଦୁନାହିଁ; କିନ୍ତୁ ସେକଥା ଅଲଗା ଏବଂ ତାଙ୍କ ଯଗ୍ରେଇପଣ ଓ ମେଲାପି ଭାବର ଯଥେଷ୍ଟ ପ୍ରମାଣ ଆଜି ମିଳିଗଲାଣି ।

ତଥାପି ମୁଁ ତାଙ୍କର ସହଜ ନିଷ୍ଠୀଡ଼ନ ଭାବକୁ ସୁସ୍ୱାଗତ ଜଣାଇ ପାରିଲି ନାହିଁ । ମୋର ମନେ ହେଲା ଯେ ଏହି ସୁବୋଧ ପାଠ ପଢ଼ିବା ବୁଦ୍ଧିମାନର କାର୍ଯ୍ୟ ନୁହେଁ । ମୋର ଅଶଙ୍କା ହେଲା ଯେ ଦିନ ପରେ ଦିନ ଏହି ଲୋକଟି ସାଙ୍ଗରେ କାମ କରିବା, ତାର ଉପର ହାକିମ ହୋଇ ବସିବାରେ ସୁଖ ଲାଗିବ ନାହିଁ । କାଳକ୍ରମେ ମୁଁ ମଧ୍ୟ ସେମିତି ହୋଇଯିବି – ସାଦାସିଧା ଯଗ୍ରେଇ ଓ ମେଲାପି !

ତେଣୁ ମୁଁ ଗମ୍ଭୀର ହେଲି । ଅଫିସରେ ଥିଲାବେଳେ ଇଙ୍ଗିତରେ ଜଣାଇ ଦେଲି ଯେ ମୁଁ ପ୍ରୟୋଜନୀୟ କଥା ଶୁଣିବାକୁ ଚାହେଁ, ଫାଇଲ ସମ୍ବନ୍ଧୀୟ କଥା । ତୁମ ଖୁଡ଼ୀଙ୍କର ଭାଇ ବଡ଼ ଡ଼ାକ୍ତର । ଭୁବନେଶ୍ୱରରେ ମଧ୍ୟ ତାଙ୍କର ସୁଖ୍ୟାତି ଅଛି; ତୁମ ଭଉଣୀଙ୍କ ଝିଅ ଅତି ବୁଦ୍ଧିମତୀ, ଚାରିବର୍ଷ ବୟସରୁ ଶୁଦ୍ଧ ଇଂରାଜୀରେ କଥାବାର୍ତ୍ତା କରିପାରେ; ତୁମ ବାପା ତୁମକୁ ଭାରି ଭଲ ପାଉଥିଲେ, ତୁମରି ନାଁ ଉଚ୍ଚାରଣ କରି ଦେହତ୍ୟାଗ କଲେ—ଏସବୁ ଶୁଣି କିଛି ଲାଭ ନାହିଁ । ପୁଣି ମୋ ଘରକୁ ଯେତେବେଳେ ଆସିବ, ମୋ ସ୍ତ୍ରୀଙ୍କ ସହିତ କଥାବାର୍ତ୍ତା କର । ଜାଣିରଖ ମୁଁ ପୁରୁଣା ଲୋକ, ମୋର ସଂସାର ଭିନ୍ନ । ମୁଁ, ତୁମ ଯଗ୍ରେଇ ଗପରେ ଆଗ୍ରହୀ ନୁହେଁ ।

ସେ ବୋଧହୁଏ ମୋର ଅଭିପ୍ରାୟ ନିର୍ଦ୍ଦେଶ ବୁଝିପାରିଲେ । କାରଣ କିଛିଦିନ ଉତ୍ତାରୁ ଦେଖାଗଲା ଯେ ସେ ମୋର ସ୍ତ୍ରୀଙ୍କ ସହିତ ଅଧିକ ସମୟ ବିତାଉଛନ୍ତି । କେବେ କେମିତି ଦୀର୍ଘକାଳ ଯଗ୍ରେଇ ଗପ ଗପିସାରିଲା ପରେ ମୋ ସ୍ତ୍ରୀଙ୍କୁ କହନ୍ତି—ଏକ୍ସକଉଜ୍ ମି, ଓ ମୋ ପାଖକୁ ଉଠି ଆସନ୍ତି । ଅଫିସ ସମ୍ବନ୍ଧରେ ପଦେ ଦ'ପଦ କଥା କହନ୍ତି ଓ ପରାମର୍ଶ ନିଅନ୍ତି । ମୋ ସ୍ତ୍ରୀ ମୁଗ୍ଧ ଦୃଷ୍ଟିରେ ଚାହିଁରହନ୍ତି – କୌଣସି ଜରୁରୀ ଓ ଗୁରୁତର କଥା ହୋଇଥିବ ପରା । ମିସ୍ ସରକାର ମଧ୍ୟ ଜଣେ ଅଫିସର ।

କ୍ରମଶଃ ଆମର ଦିଲ୍ଲୀ ରହଣି ପୁରୁଣା ହୋଇ ଆସିଲା । ଆମେ ଦିଲ୍ଲୀ ସମାଜର ବର୍ଣ୍ଣମାଳା ଚିହ୍ନିଗଲୁ । ପାର୍ଟି କେମିତି ଦେବାକୁ ହୁଏ, କେମିତି ଜମେଇବାକୁ ହୁଏ, କାହା ସାଙ୍ଗରେ କାହାକୁ ଯୋଡ଼ିବାକୁ ହୁଏ, କନଟ୍ ପ୍ଲେସରେ ଘୂରି ବୁଲିବାର ବିଶିଷ୍ଟ ଶୈଳୀ; ଉଡାଙ୍ଗ ରାଜନୀତି ଚର୍ଚ୍ଚା ଯେଉଁଥିରେ ମନ୍ତ୍ରୀ ଓ ସେକ୍ରେଟାରୀମାନଙ୍କର ଡାକ ନାଁ ଏବଂ ତାଙ୍କ ପରିବାର ଚରିତ୍ର ଜାଣିବାକୁ ହୁଏ, ଦିଲ୍ଲୀର ଦାରୁଣ ଗ୍ରୀଷ୍ମ ଓ ଶୀତର

ମହତ୍ତ୍ୱ—ଏସମସ୍ତ ବିଷୟ ଆମେ କିଛି କିଛି ଜାଣିଲୁ ଓ ପସନ୍ଦ କଲୁ । ମୋଟ ଉପରେ ଆମେ ରାଜଧାନୀର ସବ ସ୍ତରଗୀୟ ଅର୍ଥାତ୍ ସରକାରୀ ଫ୍ଲାଟକୁ ଭଲ ପାଇଲୁ । ମିସ୍ ସରକାର ଯାହା କହିଥିଲେ ମିଛ ନୁହେଁ ।

ଦିନେ ମୁଁ ଅଫିସକୁ ଯିବା ପାଇଁ ବାହାରୁଛି; ଏହି ସମୟରେ ମୋ ସ୍ତ୍ରୀ ପଚାରିଲେ, ମିସ୍ ସରକାର ଅଫିସ କାମରେ କେମିତିକା ?''

ମୁଁ ତାଙ୍କ ପ୍ରଶ୍ନର ଉଦ୍ଦେଶ୍ୟ ବୁଝିପାରିଲି ନାହିଁ ; କିନ୍ତୁ ତାଙ୍କ ଜିଜ୍ଞାସାରେ ଧାର ଥିଲା । ମୁଁ କହିଲି, 'ସାଧାରଣ' ।

ସେହିଠୁଁ ସେ ମୁହଁ ମୋଡ଼ିଲା ପରି କହିଲେ, 'ହୁଁ ; କିନ୍ତୁ ସେ ମୋତେ ପାଠ ପଢ଼େଇବେ ନ୍ୟାପ୍‌କିନ୍ କେମିତି ଭାଙ୍ଗିବାକୁ ହୁଏ, ସାଲାଡରେ କେଉଁ ଶସ୍ ପଡ଼ିବ, କେଉଁ ରଙ୍ଗର ପରଦା କଲେ ଘରକୁ ଭଲ ଦେଖାଯିବ ! କିଓ ତୁମେ ତୁମ କାମ କର ଏସବୁଥିରେ ମୁଣ୍ଡ ପୂରାଉଛ କାହିଁକି ? ସେଦିନ ମିସେସ୍ ନନ୍ଦୀ ମଧ୍ୟ ସେଇ କଥା କହୁଥିଲେ । କହୁଥିଲେ ମୁଁ ତାଙ୍କୁ ଅଯଥା ପ୍ରଶ୍ରୟ ଦେଉଛି । ମୁଁ ବରଂ କହିଲି ଯେ, ନାଇଁ ଲୋକଟି ଭଲ; କିନ୍ତୁ ସେ ଟିକିଏ ଘରଣୀ ବନିବାକୁ ଚାହାନ୍ତି । ଆଉ ଦିନେ ମିସେସ୍ ଦାଶ ଓ ମୁଁ ହସି ହସି ଗଡ଼ିଗଲୁ । ମିସ୍ ସରକାର କହିଲେ ଯେ, ଶାଗକୁ ନ ସିଝାଇଲେ କୁଆଡ଼େ ତାର ସୁଆଦ ଆସେ ନାହିଁ ।....

ମୋର ଆଉ ଶୁଣିବାକୁ ଧୈର୍ଯ୍ୟ ନ ଥିଲା । ଶ୍ରୀମତୀଙ୍କର ଏହି ମତ ପରିବର୍ତ୍ତନ ମୋତେ ଭଲ ଲାଗିଲା ନାହିଁ । ସେ ନିଜେ ତ ପୁଣି କହୁଥିଲେ—

ଅଥଚ ଶ୍ରୀମତୀଙ୍କଠାରୁ ସାହସ ପାଇଲାପରି ମୁଁ ଅଫିସରେ ମୋ ହାକିମି ମିଜାଜ୍ ଦେଖାଇଲି । ମିସ୍ ସରକାରଙ୍କ ଫାଇଲ ଦେଖିଲାବେଳେ କଡ଼ାଭାଷାର ନୋଟ୍ ଲେଖିଲି ଯେ କେସ୍‌ର ଆଲୋଚନା ଠିକ୍‌ଭାବେ ହୋଇ ନାହିଁ, ମୁଁ ଏହାଠାରୁ ଅଧିକ ଆଶା କରିଥିଲି, ଇତ୍ୟାଦି । ଲେଖିସାରି ଶ୍ରୀମତୀଙ୍କ ଉଦ୍ଦେଶ୍ୟରେ ମନେ ମନେ କହିଲି—ଏଥର ହେଲା ' ତୁମ ମନ ମାନିଲା ! ହେଲା ଏବେ ମିସ୍ ସରକାର ଜଣେ ଅତି ସାଧାରଣ ଅଫିସର ଓ ହାସ୍ୟାସ୍ପଦ ଘରଣୀ । ତା ସତ୍ତ୍ୱେ କ'ଣ ସେ ଜୀବନର ସୁଖ ପାଇପାରିବେ ନାହିଁ ?

ଏହାର କିଛି ଦିନ ପରେ ଆମେ ତାଙ୍କ ଘରକୁ ଯାଇଥିଲୁ । ସେଦିନ ଗୋଟିଏ ପ୍ରଚଣ୍ଡ ଧୂଳିଝଡ଼ ହୋଇ ଥମି ଯାଇଥାଏ । ପବନରେ ଅକିଲା ଶାନ୍ତଭାବ ଥାଏ । ମିସ୍ ସରକାରଙ୍କ ଲନ୍ ଘନଶ୍ୟାମଳ ଦେଖାଯାଉଥାଏ, ଜ୍ୟୋତି ଢଳିଯାଇ ରଙ୍ଗ ବୋଳି ହେଲାପରି ଦିଶୁଥାଏ । ବେତ ଚଉକି ପକାଇ ଆମେ ତିନିଜଣ ଲନ୍‌ରେ ବସିଥିଲୁ, ସନ୍ଧ୍ୟାର ଅନ୍ଧକାରକୁ ଅପେକ୍ଷା କରିଥିଲୁ ।

ଅପେକ୍ଷାର କ୍ଳେଶ ହେବନ କରି ମିସ୍ ସରକାର ମଧ୍ୟ ଅଳ୍ପ କଥା କହୁ-ଥାଆନ୍ତି ; କିନ୍ତୁ ଆଡଥ୍ୟରେ ଉଣା କରି ନ ଥାନ୍ତି । ଗ୍ଲାସରେ ସରବତ ଥରକୁ ଥର ଭଲ ଦେଇଯାଉଥାନ୍ତି ଓ ପଚାରୁଥାନ୍ତି, "ଆପଣଙ୍କୁ କଷ୍ଟ ହେବଣି । ଘରକୁ ଯିବା ? ଆଜି ପବନ ମୋଟେ ନାହିଁ । ପଙ୍ଖାତଳେ ହୁଏତ.... ।"

କ୍ରମଶଃ ସନ୍ଧ୍ୟା ହେଲା ଓ ପବନ ବହିଲା । ନାରୀଦ୍ୱୟ ଗପିବାକୁ ଆରମ୍ଭ କଲେ । ....ଯେମିତି ସବୁଥର ଗପନ୍ତି ଓ ମୁଁ ଦୋଷମୁକ୍ତ ହୋଇ ନୀରବରେ ବସି ରହିବାର ସୁଯୋଗ ପାଇଲି ।

ସେମାନଙ୍କ ଗପର ପ୍ରବାହ ଓ ଉପଭୋଗ ଥିଲା; କାରଣ ସେମାନେ ଅନ୍ୟମାନଙ୍କ ବିଷୟ ଗପୁଥିଲେ । କୌଣସି ଯୁକ୍ତି ବା ଭ୍ରମରେ ଝୁଣ୍ଟି ପଡ଼ିବାର ଭୟ ନ ଥିଲା । କେବଳ ବର୍ଣ୍ଣନା ଓ ହସ ।

ମୁଁ ଅଧାଶୁଣା ହୋଇ ଶୁଣିଲି । ଶୁଣୁ ଶୁଣୁ ମୋତେ ଲାଗିଲା ଯେ ସେମାନଙ୍କ କଥା କହିବାର ଛନ୍ଦରେ ଅବିଚ୍ଛିନ୍ନ କୁଞ୍ଚ କୁଞ୍ଚ ବା ସମନ୍ୱୟ ନାହିଁ । ଶ୍ରୀମତୀ ଯେପରି ଭାବରେ ଗପୁଛନ୍ତି, ସେଥିରେ ସୁଲଭ ଭ୍ରମ ଅଛି, ତାହା ଦୈନିକ ଜୀବନର ଆବେଗରେ ମିଶିଯାଉଛି— କଫି ତିଆରି କରିବା; ଘର ସଜାଡ଼ିବା, ସନ୍ଧ୍ୟାରେ ବଜାର ବୁଲିଗଲାପରି, କିନ୍ତୁ ମିସ୍ ସରକାର ସମାନ ଭାବରେ ତାଳ ଦେଇ ପାରୁନାହାନ୍ତି । ସେ ହୁଏତ ମାଡ଼ିବସି କଥାରେ ଲଥା ଯୋଡ଼ୁଛନ୍ତି, ବେଶି ଯୋରରେ ହସୁଛନ୍ତି; କିନ୍ତୁ ସେ ଉତ୍ସାହରେ ଅଛି ଆତ୍ମପୀଡନର ଭାବ, ଅପରାହ୍ନର ଭର୍ତ୍ସନା ଓ ଉଦ୍ଦୀପନା । ଯେପରିକି ହାଟତଳର ଶାଗବାଲୀ ରହି ରହି ପାଟିକରି ଉଠୁଛି; ବୟୋଜ୍ୟେଷ୍ଠ ସଂସାରୀ ଉଚ୍ଚ କଣ୍ଠରେ ଗୀତ ପଢ଼ୁଛି, ପ୍ରତ୍ୟୁଷରେ ପ୍ରୌଢ଼ ଏକମୁହାଁ ହୋଇ ବଡ଼ ପାହୁଣ୍ଡ ପକାଇ ଭ୍ରମଣ କରୁଛି । କାହିଁକି ? କାହିଁକି ଏହି ବ୍ୟାକୁଳ ଉଚ୍ଚାରଣ ?

ବାର୍ତ୍ତାଳାପର ହାଇଫେନ ବେଳେ ମୁଁ ତାଙ୍କୁ ଲକ୍ଷ୍ୟ କଲି । କଲୋନୀର ରାସ୍ତା ଆଲୁଅ ତାଙ୍କ ଦେହ ମୁହଁର କିୟଦଂଶ ପ୍ରକାଶିତ କରୁଥିଲା । ସେତକରୁ ମୋର ଧାରଣା ହେଲା ଯେ, ସେ ପ୍ରକୃତ ପକ୍ଷେ ଆରାମ ନେଉ ନାହାନ୍ତି, ନେଇ ପାରୁନାହାନ୍ତି । ତାଙ୍କର ଓଠ ଦୁଇଟି ଦୃଢ଼ ଭାବରେ ପରସ୍ପରକୁ ଟାଣି ଧରିଛି । ତାଙ୍କର ଆଖିପତାର ସଞ୍ଚାଳନ ଦ୍ରୁତଗତିରେ ବଢ଼ି ଚାଲିଛି ।

ବୋଧହୁଏ ସେ ନିଜ ଉପରେ ରାଗୁଛନ୍ତି ଯେ ସେ ନିଜକୁ ଉଚିତ ଭାବରେ ଜଣାଇ ପାରୁନାହାନ୍ତି । ତାଙ୍କର ଯୌବନ ନାହିଁ ସିନା, ବାକୀ ସବୁ ଅଛି ।

ସେହିଠାରୁ ମୋ ମନର କୋମଳ ଅଙ୍ଗ ତାଙ୍କୁ ଛୁଇଁବ ଛୁଇଁବ ବୋଲି ହେଲା । ମୁଁ ଭାବିଲି ବଡ ଅଫିସର, ଛୋଟ ଅଫିସର, ପୁରୁଷ, ସ୍ତ୍ରୀ, ଏ ସବୁ ଭେଦଭାବ ନିରର୍ଥକ । ମୋର ଇଚ୍ଛା ହେଲା କହି ପକାଇବି—ମୁଁ କିଛି ସାହାଯ୍ୟ କରିପାରେ କି ?

ସେଦିନ ଶୋଇବାକୁ ଯିବା ପୂର୍ବରୁ ମୋ ସ୍ତ୍ରୀ ରହସ୍ୟ ବିଦ୍ରୂପର ଭଙ୍ଗୀରେ କହିଲେ—"ଜାଣିଛ ? ମୁଁ ଆଜି ଦେଖିଲି ଯେ ମିସ୍ ସରକାରଙ୍କ ବିଛଣାରେ ଗୋଟିଏ ରଙ୍ଗରଙ୍ଗିଆ ବହି ପଡ଼ିଥିଲା—ଟ୍ରୁ ରୋମାନସ୍ ।" ମୁଁ ଉତ୍ତର ଦେଲି—"ବେଶ୍, ଭଲ କଥା । ତୁମେ କ'ଣ ସେମିତିକା ମାଗାଜିନ୍ ପଢ଼ ନାହିଁ ନା ମୁଁ ପଢ଼େ ନାହିଁ ? ମିସ୍ ସରକାର ବସ୍ତୁତଃ କି ଦୋଷ କରିଛନ୍ତି ?" ଶ୍ରୀମତୀ ହସିଲେ, ଭାବିଲେ ମୁଁ ପରିହାସରେ ଯୋଗ ଦେଉଛି ।

···ଏହା ପରେ ଗୋଟିଏ ଖରାଦିନିଆ ପାର୍ଟିର କଥା । ସେଣ୍ଟ୍ରାଲ୍ ସେକ୍ରେଟେରିଏଟ୍‌ର ଜଣେ ପରିଚିତ ଅଫିସର ତାଙ୍କର ଆସନ୍ନ ବିଦେଶ ଯାତ୍ରା ଉପଲକ୍ଷରେ ବିଦାୟ—କକ୍‌ଟେଲ୍ ଡାକିଥିଲେ । ଅତିଥିଗଣ ତାଙ୍କ ପ୍ରଶସ୍ତ ଲନରେ ଖେଳାଇ ହୋଇ ଯାଇଥିଲେ ।

ପୋଷାକ ପାର୍ଟି । ତେଣୁ ସବୁ ପୁରୁଷମାନେ ସମବେଶାପନ୍ନ—ଧଳା ଚିପା କମ୍ବା ଖୋଲା କୋର୍ଟ ଓ କଳା ପ୍ୟାଣ୍ଟ— ପାଖକୁ ନ ଗଲେ କିଏ ବୋଲି ଜାଣିବା କଷ୍ଟ । କିନ୍ତୁ ସ୍ତ୍ରୀଲୋକମାନେ ନିଜ ନିଜର ବିଶିଷ୍ଟ ଭଙ୍ଗୀ ଓ ସ୍ୱରୁଚିର ବିଭିନ୍ନ ଶୈଳୀରେ ସଜ୍ଜିତା । ଏହି ଯେଉଁ ଶାଗୁଆ ରଙ୍ଗର ମୋଟା ସିଲ୍କ ଶାଢ଼ୀ, ମୋଟା କଜଳଗାର ଓ ହୀରାର କାନଫୁଲ ଦେଖୁଛ ସେ ନିଶ୍ଚୟ ହୋଇଥିବେ ବିଧୁଲା ରାଘବନ୍ । ତାଙ୍କ ସାଙ୍ଗରେ ଯେ ଗପ କରୁଛନ୍ତି, ଖୋଲା ଗୋରା ପିଠି, ଉରୁଙ୍ଗ ଖୋସା ଓ ଫ୍ଲେଟିଲା ନାଇଲନ୍ ଶାଢ଼ୀ, ସେ ନିଶ୍ଚୟ ହୋଇଥିବେ ବାଣିଜ୍ୟ ସେକ୍ରେଟେରୀ ମିଷ୍ଟର ଖନ୍ନାଙ୍କ ଝିଅ, ମିସ୍ ମୀନା ଖନ୍ନା । ସେହିପରି ବାରି ହୋଇ ଯାଉଛନ୍ତି ମିସେସ୍ ଦତ୍ତ, ବହଳିଆ ଲିପିଷ୍ଟିକ୍ ସାଙ୍ଗକୁ ବଡ଼ ସିନ୍ଦୂର ଟୋପା । ମିସେସ୍ ଆପ୍ଟେ, କଳା କୁଙ୍କୁମ, ତନ୍ତ ଶାଢ଼ୀ, ଓ ଖୋଲା ବବ୍‌ବାଳ । ମିସେସ୍ ଅଗରୱାଲ, ଉତ୍କଟ ନାଲି ରଙ୍ଗର ଶାଢ଼ୀ ଉପରେ ଲମ୍ବା ସୁନାହାର—ଇତ୍ୟାଦି ।

ଏ କରୁ ଅନେକଙ୍କ ସଙ୍ଗେ ପଦେ ଅଧେ କଥା କହିଦେଇ ମୁଁ ଘୂରି ବୁଲୁଥିଲି, କକ୍‌ଟେଲ୍ ପାର୍ଟିରେ ଯେମିତି ହୁଏ ଏବଂ ଦେଖିବାରେ ଆନନ୍ଦ ପାଉଥିଲି । ହଠାତ୍ ମୋ ଆଘ୍ରାଣରେ ଗୋଟିଏ ପରିଚିତ ବାସ୍ନା ଆସିଲା ଓ ଜଣେ ସୁଦୀର୍ଘା ନାରୀ ମୋ ପାଖ ଦେଇ ଚାଲିଗଲେ । ମୁଁ ତାଙ୍କ ପଛରୁ ଦେଖିଲି— ତାଙ୍କ ଅଳକରେ ଗୋଟିଏ ନାଲି ଗୋଲାପ ଫୁଲ । ମୁଁ ଅନୁମାନ କଲି— ଏ ହୋଇଥିବେ ମିସେସ ଗୁପ୍ତା....ନା ମିସେସ୍ ଚନ୍ଦ···ନା···

ମୋର ସନ୍ଦେହ ଦୂରକରି ସେ ବୁଲି ପଡ଼ିଲେ ଓ ହାତଧରା ଗିଲାସରେ ଗଭୀର ଚୁମୁକ ଦେଲେ । ମୁଁ ଦେଖିଲି ଆଉ କେହି ନୁହେଁ—ଆଶା ସରକାର !

ଅସାଧାରଣ ନୁହେଁ । ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ତଥାପି ମୁଁ ତାଙ୍କ ଆଡ଼କୁ ଅଭଦ୍ରଙ୍କ ପରି ଚାହିଁ ରହିଲି ।

ମୁଁ କଅଣ ଦେଖୁଛି—କାର୍ଟୁନ୍ ନା କଳ୍ପନା ?

ମୁଁ ଉଦ୍‌ବ୍ୟସ୍ତ ହେଲି, କେଉଁଥି ପାଇଁ କହି ପାରିବି ନାହିଁ । ମୋର ମନେ ହେଲା ଯେ ପ୍ରତ୍ୟୁତ୍ତର ଆବଶ୍ୟକ । ପାଣିରେ ଟେକା ପଡ଼ିଛି, ମିସ୍ ସରକାର ଅଳକରେ ଫୁଲ ଖୋସିଛନ୍ତି । ସେଇ ଘଟଣାର ଚେତନା ତାଙ୍କ ମୁହଁରେ ଫୁଟି ଉଠୁଛି । ସେ ଜାଣି ଶୁଣି ଏହି କାମ କରିଛନ୍ତି । ମୁଁ କଅଣ କହିବାକୁ ଯେ ଏହା ଅସାଧାରଣ ନୁହେଁ, ଯେ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ?

ମୁଁ ମୋ ପାମ୍‌ସ୍ୱରେ ଚମ୍ପକ ଦେଇ ଇଂରାଜୀରେ କହି ପକାଇଲି, "ହ୍ୟାଲୋ କେତେବେଳେ ଆସିଲେ ?" ଏବଂ ପାଖେଇଗଲି ।

ତାଙ୍କ ଚେହେରା ବିଶେଷ କିଛି ବଦଳି ନାହିଁ । ହୁଏତ ଓଠରେ ଟିକିଏ ନାଲି ରଙ୍ଗର ଆଭା; କିନ୍ତୁ ତା'ର ଧୂସର ପୃଷ୍ଠଭୂମି ଦିଶିଯାଉଛି । ବୋଧହୁଏ ଗ୍ରୀଷ୍ମର ମର୍ଯ୍ୟାଦା ପାଇଁ ଶାଢ଼ୀକୁ ଅଣ୍ଟା ପାଖରେ ଖୋସିଦିଆ ହୋଇଛି; କିନ୍ତୁ ସେଥି ଯୋଗୁଁ କୌଣସି ପରିବର୍ତ୍ତନ ଦୃଶ୍ୟ ହେଉ ନାହିଁ । ନା, ଏଗୁଡ଼ିକ ବିଧିଗତ ସାମାନ୍ୟତା । କେବଳ ସେହି ଅଳକର ଫୁଲ ।

ସେ କଣ ଚାହାଁନ୍ତି ? କେଉଁଥିପାଇଁ ଏହି ପତାକା ପୋତିଛନ୍ତି ? ଏ କେଉଁ ଧରଣର ଅସ୍ତ୍ର ? ମୁଁ ଆହୁରି ପାଖକୁ ନ ଯାଇ ରହି ପାରିଲି ନାହିଁ । "କହିଲି—ଆପଣଙ୍କ ଗିଲାସ ସରି ଆସିଲାଣି । ଆଉ ଗିଲାସେ ଆଣିଦିଏ ?"

ମୋର ମନେ ହେଲା ଯେ ସେ ମୋର ଯାଚନାକୁ ସ୍ୱୀକାର କରୁଛନ୍ତି—ଯେପରିକି ମୋର ଏପରି କହିବାର କଥା । ସେ ତାଙ୍କ ଉତ୍ତୋଳିତ ଗ୍ରୀବାରେ ଆଖି ନ ଆଣି ଇଷତ୍ ହସି କହିଲେ—'ନୋ' ଥ୍ୟାଙ୍କ୍ୟୁ' । ମୁଁ ଉତ୍ତେଜିତ ହେଲି । ଭାବିଲି ଯେ ଏହି ନୂତନତ୍ୱ ଏହି ଅଭିନବ ପତାକାର ଫରଫରକୁ ମୁଠେଇ ଧରିବ । ପ୍ରହସନରେ ଯୋଗ ଦେବି ।

କିନ୍ତୁ ପୁଣି ସେହି ପ୍ରଶ୍ନ ଆସୁଛି—କାର୍ଟୁନ୍ ନା କଳ୍ପନା ? ମୋତେ ଲାଗିଲା ଯେ ଉପହାସର ତଳେ ତଳେ ଗୋଟିଏ ଅଦ୍ଭୁତ ଅନୁରାଗ ଚେଇଁ ଉଠୁଛି । ମୁଁ ମନଶ୍ଚକ୍ଷୁରେ ଦେଖୁଛି ଆଉ ଜଣକୁ । ତାର ଚଞ୍ଚଳ ପାଖିପତାରେ ନାଚିବାର କ୍ରୀଡ଼ା, ତାର ଚୂର୍ଣ୍ଣକୁନ୍ତଳରେ ଅମାନିଆପଣ, ତାର ଅଧାମେଲା ଓଠରେ ପାଖୁଡ଼ାର ରଙ୍ଗ ଓ ଅପେକ୍ଷା । ଯେପରିକି ଅଳକର ଫୁଲ ଜଳିଉଠିଲି ଯାଦୁକରର ହାଁ ପରି ତାର ଦୁଃସାହସ,

ତାର ଝଙ୍କା, ତାର ବଗାଁଚ ଛଳନାରେ ତରୁଣୀ ଆଶା ସରକାର ଫେରଆସିଛନ୍ତି । ସେ ମୋ ଆଡ଼କୁ ଗ୍ୱହିଁଛନ୍ତି ।

କହିଲି, "ଆପଣଙ୍କୁ ବେଶ୍ ମାନୁଛି ।" କଣ ମାନୁଛି ? ଶାଢ଼ି, ଭ୍ୟାନିଟି ବ୍ୟାଗ୍, ନା ଆଉ କଅଣ ? ମିସ୍ ସରକାର ଟିକଏ ଲାଜେଇ ଗଲେ । ମୋତେ ଅଡ଼ୁଆ ଲାଗିଲା ନାହିଁ ।

ମୁଁ ଫେରି ଯାଇ ପାରିଥାନ୍ତି; କିନ୍ତୁ ମୁଁ ଭାବିଲି ଯେ ଫେରିଯିବାର ଅର୍ଥ କାପୁରୁଷତା । ମୁଁ କଅଣ ମଣିଷ ନୁହେଁ ? ତାଙ୍କର ଫୁଲ ଲଗାଇବା କଣ ଏତେ ଅକାରଣ ? ମୁଁ ଏହି ନୂତନାଙ୍କୁ ଖୁସି କରି ପାରିବି, ଆଘାତ ଦେଇ ପାରିବି, ଦୟା ଦେଖାଇ ପାରିବି । ଆପସରିଯିବାର ପ୍ରଶ୍ନ ଉଠୁନାହିଁ ।

ତେଣୁ ମୁଁ ତାଙ୍କ ପାଖ ଛାଡ଼ିଲି ନାହିଁ । ପଚ୍ଚରିଲି—"ଆପଣ ଅମୁକ ଫିଲମ୍ ଦେଖିଛନ୍ତି ? ଫିଲ୍ମରୁ ସାହିତ୍ୟ, ସାହିତ୍ୟରୁ ଆର୍ଟ, ଦର୍ଶାରେ ଗ୍ୱଲିଥିବା ଆର୍ଟ ଏକ୍‌ଜିବସନ୍, ମଡ଼ର୍ଣ୍ଣ ଆର୍ଟ ।

ସେ କହିଲେ—"ମୁଁ ମଡ଼ର୍ଣ୍ଣ ଆର୍ଟ କଣ ବୁଝେ ନାହିଁ; କିନ୍ତୁ ଯେତେବେଳେ ବୁଝେ ମୋତେ ଭାରି ଡ଼ର ଲାଗେ ।"

"ଠିକ୍ କହିଛନ୍ତି", ମୁଁ କହିଲି, (ମୋର ମନେ ହେଲା ଯେ ଏପରି ସାରଗର୍ଭକ କଥା ସେ ଆଗରୁ କେବେ କହି ନ ଥିଲେ ) "ମଡ଼ର୍ଣ୍ଣ ଆର୍ଟ ଜୀବନ୍ତ—ଜ୍ୱଳନ୍ତ ସତ୍ୟକୁ ଚହ୍ଲାଇ ଦିଏ, ଦେହ ଭିତରର ହାଡ ମାଂସକୁ ଦେଖାଇ ଦେଲା ପରି···ଆଉ ଗିଲସେ ଆଣି ଦେବ ?"

'ନୋ, ଥ୍ୟାଙ୍କସ୍ ।" ସେ ତଥାପି ସସ୍ମିତା, କିନ୍ତୁ ପୂର୍ବର ଦମ୍ଭ ଥିଲା ପରି ଲାଗୁ ନାହିଁ । ମୁଁ ପୁଣି କହି ଗ୍ୱଲିଲି—

"ଧରନ୍ତୁ ନାରୀର ଗ୍ୱହାଣୀ । ସାଧାରଣ ଆର୍ଟ ସେଥିରେ ଜଣାଶୁଣା ହସ କାନ୍ଦର ରୂପ ଦେଖାଏ, କିନ୍ତୁ ମଡ଼ର୍ଣ୍ଣ ଆର୍ଟ ଦେଖାଏ ଅଭ୍ୟନ୍ତର ଓ ମହାକାଶ । ପୃଥିବୀ ତଳର କାଦୁଅ, ଲଭା ଓ ମନ୍ଦ ଦେହ, କମ୍ବା ସ୍ୱର୍ଗ, ଉଡ଼ନ୍ତା ଗ୍ରହ ଉପଗ୍ରହ ।"

"ମୁଁ ଆସେ—ମିସେସ୍ ନାରାୟଣନ୍ ଡାକୁଥିଲେ—" ସେ କଣ ମୋଠାରୁ ଖସି ପଳାଇବାକୁ ଗ୍ୱହୁଁଛନ୍ତି ? ମୁଁ କଣ ତାଙ୍କର ଗ୍ୱହାଣି କଥା କହୁଥିଲି ?

ମୁଁ ତାଙ୍କୁ ଯିବାକୁ ଦେଲି ନାହିଁ । ସେ ଡରୁଛନ୍ତି, ନିଜକୁ ଡରୁଛନ୍ତି । ମୋର କଳ୍ପନା ପୁଣି ବଳିଷ୍ଠ ହୋଇ ଉଠିଲା । ମୁଁ ଭାବିଲି କେଉଁ ବେତସବନର ଚକଡା ଭାଧା ଆଉ ଆଉ ନାହିଁ ନାହିଁ କହୁଛି, ପଳାୟନର ମିଛ ବାଟ ଖୋଜୁଛି । ବ୍ରୀଡ଼ୀସା !

କାଜୁବାଦାମ ଓ କବାବର ପ୍ଲେଟ ଆସିଲା । ତା' ପଛକୁ ଆଉ ଜଣେ, ହାତରେ ପାନୀୟର ପ୍ଲେଟ । ମୁଁ ଆଉ ଅପେକ୍ଷା କଲି ନାହିଁ । ତାଙ୍କ ହାତରୁ ଖାଲି ଗିଲାସ ନେଇ ଆସି ଗୋଟିଏ ଭରା ଗିଲାସ ହାତକୁ ବଢ଼ାଇ ଦେଲି ।

ଧୂଇଟି ହାତର ଛୁଆଁ ଛୁଇଁ । ମୁଁ ତାଙ୍କ ମୁହଁରଣ ଦେଖିଲି । ନା ମୁଁ ନିଜେ ଥରି ଉଠିଲି ? ତତ୍ସହ ସେହି ଫୁଲର ବାସ୍ନା ଉତ୍କଟ ବୋଧ ହେଲା—ସଦ୍ୟ ଫୁଲଟା ଅନ୍ତରରେ ବୋଳା ହୋଇ ଆସିଛି, ଇଉ—ଡ଼ି—କୋଲନକୁ ଜିଣିବ ବୋଲି ।

କିଏ କହୁଛି ମୁଁ ପୁଣି ତାଙ୍କ ହାତରେ ହାତ ଦେଲି ? ମିଛ । ସେ ନିଜେ ମୋ ହାତକୁ ଧରି ପକାଇଲେ । ମୁଁ କେମିତି ଜାଣିବ ଯେ ସେ ବଳ ପ୍ରୟୋଗ କରି ଚାଲିଯିବାକୁ ଚାହାନ୍ତି ? ପାନୀୟ ଢାଳି ହୋଇଗଲା ମୋର ଗଳାବନ୍ଦ କୋଟ୍ ଉପରେ । ସେ ଅତର୍କିତ ଧ୍ୱନି କରି ରୁମାଲ କାଢ଼ିଲେ । ମୁଁ ଆଶ୍ୱାସନା ଦେଲି । ତାଙ୍କ ଶରୀରର ଅଙ୍ଗ ବିଶେଷ ମୋ ଦେହକୁ ଛୁଇଁଲା । ସେଥିରୁ କଣ ହେଲା ?

ସେଥିରୁ ପରିସ୍ଥିତି ଅସହ୍ୟ ହୋଇ ଉଠିଲା । ମୁଁ ଭାବିଲି ଯେ ଆଉ ମୁହୂର୍ତ୍ତିକ ପରେ ମୁଁ ଧାରରୁ ଖସି ପଡ଼ିବ, ନିର୍ବୋଧତାର ଶୁଖିଲା କୂଅରେ ଗଳି ପଡ଼ିବ । ପାଖରେ ଥିବେ ମିସ୍ ସରକାର । ଅନ୍ୟମାନେ ଆମକୁ ଦେଖି ହସିବେ, ତାଳି ମାରିବେ ଏଇ ଦେଖନ୍ତୁ । ଗୋଟିଏ ଜୁହେଁ, ଯୋଡ଼ିଏ । ଏମାନଙ୍କ ବୟସ କେତେ ? ଏମାନେ କି କାମ କରନ୍ତି ?

ତା'ପରେ ସେ କଣ କହିଲେ ଓ ମୁଁ କଣ କହିଲି ଏବଂ ଆମେ କିପରି ଭାବରେ ଅଲଗା ହୋଇଗଲୁ ମୋର ମନେ ପଡ଼ୁ ନାହିଁ ।

ତା ପରଦିନ । ମୋର ଅଫିସ ଟେବୁଲ । ସମ୍ମୁଖରେ ମିସ୍ ସରକାର । ଅଳକ ପୁଷ୍ପ-ବର୍ଜିତ । ଲମ୍ବା କଠିଣ ମୁହଁ ନୂତନ ପରି ସାଦା ଏବଂ ସେଥିରେ ଦୁର୍ବଳ ହସ । ମୁଁ ମଧ୍ୟ ଅନୁରୂପ ଉତ୍ତାପ ହସିଲି । କାଲି ରାତିର ସ୍ମୃତି ମନରେ ଅଛି । ଆଉ କଣ କରି ହୁଅନ୍ତା ।

ହଠାତ୍ ମୋତେ ବୁଦ୍ଧି ଜୁଟିଲା ମୁଁ କହିଲି, "ଆଚ୍ଛା, କାଲି ମିଷ୍ଟର ରହମ୍ ପାର୍ଟିକୁ ଆସିଥିଲେ, ମିସେସ୍ ରହମଙ୍କୁ ତ ଦେଖିଲି ନାହିଁ ? ସେ ଦୁଇଜଣଙ୍କର କଣ ସତରେ ପଡ଼ୁନାହିଁ ?"

ତାଙ୍କ ମୁହଁ ଉଦ୍ଭାସିତ ହେଲା । ଆଗ୍ରହଭରା କଣ୍ଠରେ ସେ କହିଲେ, "ଅପଣ ଜାଣନ୍ତି ନାହିଁ ? ଏବେ ଆଉ ଗୋଟିଏ ପାର୍ଟିକୁ ମୁଁ ଯାଇଥିଲି । ସେଠି କେବଳ ମିସେସ୍ ରହିମ୍ ଆସିଥିଲେ । କହିଲେ, ମିଷ୍ଟର ଆସି ପାରିଲେ ନାହିଁ, ତାଙ୍କ ମୁଣ୍ଡ ଖୁବ ବଥାଉଛି । ଆଉ "ଥରେ—"

ଏହିପରି ଭାବରେ ଆଳାପ ପ୍ରସାରିତ ହେଲା ଏବଂ ମୁଁ ନିଜକୁ ଶାସ୍ତି ଦେଲି ।

—※—

# ଜନ ଓ ଜନତା

ଅଖିଳ ମୋହନ ପଟ୍ଟନାୟକ

---

ବେଶ୍ ରାତି ହୋଇଗଲାଣି । ବାଲେଶ୍ୱରରୁ ଗାଡ଼ି ନେଇ ଫେରୁଥିଲି । କିନ୍ତୁ ଭଦ୍ରକ ପହଞ୍ଚିବାର ଅଳ୍ପ ରାସ୍ତା ପୂର୍ବରୁ ଗୋଟାଏ ପୋଲ ତିଆରି ହେବା ପାଇଁ ରାସ୍ତାଟିକୁ ମଝିରୁ କାଟି ଦିଆଯାଇଛି ଏବଂ ଗାଡ଼ି ସବୁ ଯିବା ଆସିବା କରିବା ପାଇଁ ଗୋଟିଏ ଡାଇଭରସନ୍ ରାସ୍ତା ତିଆରି କରାଯାଇଛି । ସେ ଜାଗାରେ ପହଞ୍ଚିବା ପୂର୍ବରୁ ପ୍ରାୟ ଦଶଟି ଗାଡ଼ି ପଛକୁ ପଛ ଲାଗି ଅଟକି ରହିଛି । ଅଗତ୍ୟା ଗାଡ଼ି ବନ୍ଦକରି ଅପେକ୍ଷା କଲି । କିନ୍ତୁ ପନ୍ଦର ମିନିଟ୍ ଖଣ୍ଡେ ଅପେକ୍ଷା କଲାପରେ, ଯାହା ସାଧାରଣତଃ ହୋଇ-ଥାଏ, ଗାଡ଼ିରେ ଅପେକ୍ଷା କରିବା ପାଇଁ ଆଉ ଧୈର୍ଯ୍ୟ ରହିଲା ନାହିଁ । ରାତି ଅନେକ ହେଲାଣି । ପିଲାମାନେ ସମସ୍ତେ ଗାଡ଼ିର ପଛ ସିଟ୍‌ରେ ଘୁମେଇ ପଡ଼ିଲେଣି ଅନେକ ବେଳୁ । ମୁଁ ସେମାନଙ୍କୁ ଗାଡ଼ିରେ ଛାଡ଼ି ଅଟକ-ବନ୍ଦୀ ହେବାର କାରଣ ଅନୁସନ୍ଧାନ କରିବାକୁ ଆଗକୁ ଗଲି ।

ବର୍ଷା ସନ୍ଧ୍ୟାବେଳୁ ଝିପି ଝିପି ବର୍ଷା ଲାଗି ରହିଛି; କିନ୍ତୁ ମାତ୍ର ପାଞ୍ଚ ଦଶମିନିଟ୍ ହେଲା ଟିକିଏ ଛାଡ଼ିଯାଇଛି । ରାସ୍ତାକଟା ହୋଇଥିବା ସ୍ଥାନରେ ପହଞ୍ଚିଯିବା ପରେ କାରଣ ଦିବାଲୋକ ପରି ସ୍ପଷ୍ଟ ହୋଇ ଉଠିଲା । ଗୋଟିଏ ମର୍ସିଡ଼ିଜ ହେଭି ଟ୍ରକ୍ ଡାଇଭରସନ୍ ରାସ୍ତା ମଝିରେ ଅଟକି ଯାଇଛି ଓ ଉଠାଣି ଉଠିବାର ନିଷ୍ଫଳ ଆକ୍ରୋଶରେ ଗର୍ଜ୍ଜନ କରି ଉଠୁଛି ବାରମ୍ବାର । ଥରକୁ ଥର ଚକ ନରମ ମାଟିରେ ଦବି ଯାଉଛି ଆହୁରି ତଳକୁ ଓ ଉପରକୁ ଉଠିବାର ଆଶା କ୍ଷୀଣରୁ କ୍ଷୀଣତର ହୋଇ ଯାଉଛି । ଟ୍ରକ୍‌ଟିରେ ପର୍ବତ ଆକାରର ମାଲ୍ ବୋଝେଇ ହୋଇଛି ଏବଂ ତା ଉପରେ ଗୋଟିଏ ପ୍ରକାଣ୍ଡ ଟାର୍ପୁଲିନ୍ ଘୋଡେଇ ଦିଆଯିବାରୁ ଦେଖାଯାଉଛି ଗୋଟିଏ ହାତୀ ପରି । ମାଲ୍‌ଗୁଡ଼ିକର ଉଚ୍ଚତା ଟ୍ରକ୍‌ର ଡ୍ରାଇଭର କ୍ୟାବିନ୍ ଉପରକୁ ପ୍ରାୟ ଛଅ ଫୁଟ ଉପରକୁ ଉଠିଛି । ବୋଝେଇ ଟ୍ରକ୍, ଡ୍ରାଇଭରସନ୍ ନରମ ଚିକଟା ମାଟି ଭିତରେ ଧସିଯାଇଛି । ଚକ ଯେତିକି ଜୋରରେ ବୁଲୁଛି, ତାହା ଦବି ଯାଉଛି ଆହୁରି ତଳକୁ ତଳକୁ ।

ଏହି ଟ୍ରକ୍‌ଟିର ଏପରି ଏକ ପରିସ୍ଥିତିରୁ ଉଦ୍ଧାର ପାଇବାର ଚେଷ୍ଟା ଜନିତ ଅନେକ ସମୟ ଧରି ଚାଲିବଣି । କାରଣ ଇତି ମଧ୍ୟରେ ରାସ୍ତାର ଅପର ପଟରେ ଅନ୍ୟୁନ ଚାଳିଶଖଣ୍ଡ ଦ୍ରୁତଗାମୀ ଗାଡ଼ି ଚଳତ୍‌ଶକ୍ତିହୀନ ଅବସ୍ଥାରେ ପଡ଼ିରହି ସେହି ଦୁର୍ଭାଗା ଟ୍ରକ୍‌ଟିକୁ ସହାନୁଭୂତି ଦେଖାଇବା ଦୂରେ ଥାଉ ତା'କୁ ଅଭିଶାପ ଦେଉଛନ୍ତି । ପାଖ ଗାଁର ପ୍ରାୟ ଚାଳିଶ ଜଣ ଲୋକ ମଧ୍ୟ ଲୁଙ୍ଗି ପିନ୍ଧି ଗାମୁଛା ପିନ୍ଧି ଏପରି ଏକ ଦୁର୍ଭାଗ୍ୟ-ଜନକ ଅଥଚ ଚିତ୍ତୋତ୍ତେଜକ ନାଟକ ଦେଖିବାପାଇଁ ରାସ୍ତା ଉପରେ ଆସର ଜମେଇ ସାରିଲେଣି । ଟ୍ରକ୍‌ର ସାମ୍‌ନା ଆଲୁଅର ପ୍ରଖର ଦ୍ୟୁତିରେ ଆରପଟର ପ୍ରତୀକ୍ଷମାଣ ଗାଡ଼ି-ଗୁଡ଼ିକ ସ୍ପଷ୍ଟ ଦେଖି ହେଉଛି । ଗର୍ଜନ କରି ଟ୍ରକ୍ ବାରମ୍ବାର ଆଗକୁ ଧସେଇ ଯାଉଛି, ପୁଣି ପରମୁହୂର୍ତ୍ତରେ ଖସଡ଼ା ମାଟି ଭିତରେ ଚକ ପଶିଯାଉଥିବାରୁ ଏକ ଆହତ ବାଘୁଣୀ ପରି ଆର୍ତ୍ତନାଦ କରି ତା'ର ଆଗ ଗୋଡ଼ ଗୋଟେଇ ଆଣି ସ୍ଥାଣୁ ପରି ପଡ଼ି ରହୁଛି । ମୁଁ ସ୍ପଷ୍ଟ ବୁଝିପାରିଲି ଯେ' ଏ ଟ୍ରକ୍ ତାର ନିଜ ଶକ୍ତିରେ ଉଠିବା ଆଉ ସମ୍ଭବପର ନୁହଁ । ଏ କଥା ଯେ—କେବଳ ମୁଁ ବୁଝିପାରୁଥିଲି ତା ନୁହଁ । ମୋ ପରି ଯେତେ ଯେତେ ଅଭିଜ୍ଞ ଡ୍ରାଇଭରମାନେ ସେଠିଥିବେ ସେମାନେ ମଧ୍ୟ ବୁଝିପାରୁଥିବେ ।

ଏଇଥର ମନେହେଲା ଯେପରି ଟ୍ରକ୍‌ଟି ଶେଷ ଚେଷ୍ଟା କରୁଛି । ଗାଡ଼ି ଚାଲିବାର ଠିକ୍ ଅବ୍ୟବହିତ ପୂର୍ବରୁ ଏକ ବିକଟ ଗର୍ଜନ ସେଇ ନିସ୍ତବ୍ଧ ରାତିରେ ଅନେକ ଦୂରକୁ ଶୁଣାଯାଇଥିବ । ତା'ପରେ ଖୁବ ଜୋରରେ ଟ୍ରକ୍‌ର ଆଗଚକ କୁଦାମାରୁଛି ଆଗକୁ କିନ୍ତୁ ହାୟ ଦୁଇଟି ପଛଚକ ଟ୍ରକ୍‌ର ସମସ୍ତ ଚେଷ୍ଟାକୁ ଯେପରି ଉପହାସ କରି ଫୁଟେ ଗଭୀର କାଦୁଅ ଭିତରେ ଖୁବ ବେଗରେ ବୁଲିଚାଲିଛି ତା'ର ନିଜର ପରିଧି ଚାରିପଟେ । ଟ୍ରକ୍‌ର ଗର୍ଜନ ପ୍ରତି ମୁହୂର୍ତ୍ତରେ ବଢ଼ିଚାଲିଛି । ଇଞ୍ଜିନ୍ ଭିତରୁ ପ୍ରଚଣ୍ଡ ଧୂଆଁ ବାହାରି ସେ ସମସ୍ତ ସ୍ଥାନଟିକୁ ଧୂମାବୃତ କରି ସାରିଲାଣି ଏବଂ ତା'ପରେ ସମସ୍ତ ଶବ୍ଦ ତରଙ୍ଗ ଯେପରି ହଠାତ୍ ବନ୍ଦ ହୋଇଗଲା । ଚତୁର୍ଦ୍ଦିଗରେ ଏକ ଅଖଣ୍ଡ ନୀରବତା । ତା'ରି ଭିତରୁ କିଏ ଜଣେ ହଠାତ୍ ଚିତ୍କାର କରି ଉଠିଲା—"ଗଲା, ଗଲା, କ୍ଲଚ୍ ପ୍ଲେଟ୍‌ଟା ଜଳି-ଗଲା," ଏବଂ ଯେପରି ତାରି କଥାକୁ ସମର୍ଥନ ଜଣେଇ ଇଞ୍ଜିନ୍ ଭିତରୁ ପ୍ରଖର ଧୂମ୍ର-ସ୍ରୋତ ଟ୍ରକ୍‌ଟିକୁ କିଛି ସମୟ ପାଇଁ ପ୍ରାୟ ଆଚ୍ଛନ୍ନ କରିଦେଲା ।

ଦେଖଣାହାରୀଙ୍କ ଭିତରେ ହତାଶାର ଏକ ମୃଦୁ ଗୁଞ୍ଜରଣ ଖେଳିଗଲା । ନାଟକର ନାୟକ ତା'ର ଶେଷ ଓ ସର୍ବସ୍ୱ ସମ୍ବଳ ଦେଇ ବାଜି ଲଗେଇଥିବା ଘୋଡ଼ା ଯେମିତି ଜିତିବାର ଠିକ୍ ଅବ୍ୟବହିତ ପୂର୍ବରୁ ଝୁଣ୍ଟିଯାଇ ତଳେ ପଡ଼ିଗଲା । ଅପେକ୍ଷା କରୁଥିବା ଗାଡ଼ି ଗୁଡ଼ିକର ଅଧିକାରୀମାନେ ଆସ୍ତେ ଆସ୍ତେ ମନ୍ଥର ଗତିରେ ପଛକୁ ଫେରିଲେ । ମୁଁ ମଧ୍ୟ ଫେରିଲି । ଆଉ ନୁହଁ ଗାଡ଼ିର ଆରୋହୀମାନଙ୍କୁ ପ୍ରସ୍ତୁତ ହେବାକୁ ପଡ଼ିବ ସକାଳ ପର୍ଯ୍ୟନ୍ତ ସେଠି ଅପେକ୍ଷା କରିବାକୁ । ବର୍ଷାଦିନେ ଏ ଦେଶର ରାସ୍ତାରେ,

ବିଶେଷ କରି ନୂଆମାନି ପଢ଼ିଥିବା ଡ୍ରାଇଭରସନ୍ ରୋଡ୍‌ରେ କାହାର ବା ଗାଡ଼ି ଥରେ ଅଧେ ଚକ ଦବିଯାଇ ଅଟକି ଯାଇନାହିଁ ?

ମୋ' ଗାଡ଼ିରେ ସମସ୍ତେ ଇର୍ଷ୍ଟିତ୍ରରେ କଥା ଯାଇଛନ୍ତି । ସେମାନଙ୍କୁ ଉଠେଇ ଏପ୍ରକାରର ଏକ ଦୁଃସମ୍ବାଦ ଦବା ମୁଁ ଉଚିତ୍ ମନେ କଲି ନାହିଁ । ମୋ ଗାଡ଼ିଠାରୁ ପୋଲ ଓ ପୋଲଠାରୁ ଗାଡ଼ି ପର୍ଯ୍ୟନ୍ତ ମୁଁ କେବଳ ବୁଲୁଚି ଏକ ଘୋର ଅନିଶ୍ଚିତତା ମଧ୍ୟରେ । ଜଣେ ବିଦେଶିନୀ ପଚାରୁଛନ୍ତି ତାଙ୍କ ଭାଷାରେ, "ଆଶା କରୁଛି ଉକାଳି ସକାଳୁ କପେ ଚା' ଅନ୍ତତଃ ମିଳିବ ।" ଅନ୍ୟ ଏକ ସ୍ଥାନରେ, "ଆଚ୍ଛା ଏଠି ପାଖରେ କେଉଁଠି କିଛି ଖାଇବାକୁ ମିଳିବ ।" ଟ୍ରକ୍‌ର ଷ୍ଟିଅରିଂ ଉପରେ ହାତ ଦେଇ ଜଣେ ଭଦ୍ରଲୋକ ଅଧା ଘୁମେଇ ପଡ଼ି କହୁଛନ୍ତି କାହାକୁ ଟାପୁଲିନ୍‌ଟା ପଦାକୁ ଆଣି ବିଛିଆ ଶୋଇ ପଡିବା ହେଲେ ।" ଆଉ କିଛି ବାଟରେ ସାମ୍ନାରେ ଗୋଟିଏ ଷ୍ଟେଟ ଫିଆଟ୍ ଗାଡ଼ି ଭିତରେ ବସିଥିବା ଯୁବକ ସିଗାରେଟ୍ ଲଗାଇ ପଚାରୁଛନ୍ତି, "ଆମେ ବୋଧହୁଏ କେତେବେଳେ ଦାର୍ଜିଲିଂରେ ଥିଲେ ?" ସମସ୍ତ ଏମାନଙ୍କ ପାଇଁ ଅଖଣ୍ଡ । ଅପେକ୍ଷା କରିବାର ଅବସରରେ ନବ ବିବାହିତ ଦମ୍ପତି ସେମାନଙ୍କର ସୁଖର ଦିନଗୁଡ଼ିକ ରୋମନ୍ଥନ କରିବାରେ ବ୍ୟସ୍ତ । ଆଉ ଜଣେ ଧୈର୍ଯ୍ୟର ଶେଷ ସୀମାରେ ପହଞ୍ଚି କହୁଛନ୍ତି, "ଏ ଟ୍ରକ୍‌ବାଲାଗୁଡ଼ାକୁ ପ୍ରସିକ୍ୟୁସନ୍ କରାଯିବା ଉଚିତ ଆଉ ହାଜତରେ ପୁରାଇ ବେତ ମାରିବା ଉଚିତ । କ'ଣ ଭାବୁଛନ୍ତି ଏମାନେ ?"

କିନ୍ତୁ ମୁଁ ଭାବୁଥିଲି ଯେ ସେମାନେ ଅନ୍ଧ ହୋଇଯାଇଛନ୍ତି ଗୋଟାଏ ଦିଗ ପ୍ରତି । ସେ ହେଉଛି କଣ୍ଟ୍ରାକ୍ଟରର ନିସ୍ପୃହ କହୁଚି, ରାସ୍ତା କାଟିଲେ ଚୋଟାଏ ଭଲ ଧରଣର ଡାଇଭର୍ସନ୍ ରାସ୍ତା ଦିଆଯିବ, ଯାହା ଏ ରାସ୍ତାର ଦୈନନ୍ଦିନ ଯାନବାହନର ଓଜନ ବହନ କରି ପାରିବ ଓ ସେପରି ଏକ ରାସ୍ତାକୁ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ପାସ୍ କରିବା ପରେ ରାସ୍ତା କାଟିବାକୁ ଅନୁମତି ଦିଆଯିବ । ଭାବୁ ଭାବୁ ମୁଁ ପୁଣି ଥରେ ପୋଲ ପାଖରେ ପହଞ୍ଚି ଗଲିଣି । ଏଥର ଅନ୍ୟ ଏକ ଦୃଶ୍ୟ ।

ସାମ୍ନାପଟୁ ଅନ୍ୟ ଏକ ଟ୍ରକ୍ ଆଗେଇ ଆସି ଏ ଟ୍ରକ୍‌ଟି ପାଖରେ ଠିଆ ହେଲାଣି ଏବଂ ଦୁର୍ଘଟଣାଗ୍ରସ୍ତ ଟ୍ରକ୍‌ଟିର ଡ୍ରାଇଭର୍ ତଳକୁ ଓହ୍ଲେଇ ଆସି ଦୁଇଟି ଟ୍ରକ୍‌କୁ ଝଣ୍ଟେ ତାର ଦଉଡ଼ି ଦ୍ୱାରା ବାନ୍ଧିବାକୁ ଯଥାସାଧ୍ୟ ଚେଷ୍ଟା କରୁଛି । ଡ୍ରାଇଭର୍‌ଟି ପଞ୍ଜାବୀ, ଶିଖ୍ । ବୟସ ପାଖାପାଖି ତିରିଶ ହେବ । ଦୁଇଟା ଟ୍ରକ୍‌ର ଆଖି ଝଲସା ଉଜ୍ଜ୍ୱଳ ଆଲୋକର ସାମ୍ନାରେ ସେ ଆଣ୍ଠୁ ମାଡ଼ି ବସି ତାର ଦଉଡ଼ିରେ ଗୋଟିଏ ମଜଭୁତ ଗଣ୍ଠି ପକାଇବାକୁ ଚେଷ୍ଟା କରିବା ଫଳରେ ତାର ଅର୍ଦ୍ଧ ଉଲଗ୍ନ ହାତର ମାଂସପେଶୀ ଗୁଡ଼ାକ ଫୁଲି ଉଠୁଛନ୍ତି ; ଏବଂ ପୁଣି କେତେବେଳେ ନରମି ଯାଉଛନ୍ତି ଏବଂ ସେଇ ଲୋକଟାକୁ ଏକ

ଫ୍ରି ପ୍ରେକ୍ଷାଳୟର ଅନ୍ୟୂନ ଦୁଇଶହ ଆଖି ନିର୍ନିମେଷ ଆଖିରେ ଚାହିଁ ରହିଛନ୍ତି । ଦେଖାଯାଉ ଏଥରଘୋଡା ଦୌଡରେ ତାର ଘୋଡ଼ା ଜିତୁଛି ନା ନାହିଁ ? ଦୁଇଟା ଟ୍ରକ୍ ମଝିରେ ଆଣ୍ଠୁମାଡ଼ି ବସିପଡ଼ି (ଲୋକଟାର ନାଁ କ'ଣ ହେବା ଉଚିତ୍ ? ଧରିନିଆଯାଉ ଦର୍ଶନ ସିଂ) ତାର ଏକଟଣା ବିରକ୍ତିହୀନ ନାଟକର ଏକକ ଅଭିନୟ କରି ଚାଲିଛି ନିଷ୍ଠାପର ଭାବରେ । ଚିବୁକ ତଳକୁ ଲମ୍ବି ଆସିଥିବା ବିପର୍ଯ୍ୟସ୍ତ ଦାଢ଼ିଗୁଡ଼ିକ ଅତ୍ୟନ୍ତ ବିଶୃଙ୍ଖଳ ଭାବରେ ଗଛର ଚେର ପରି ଚତୁର୍ଦ୍ଦିଗକୁ କାଣ୍ଡ ବିସ୍ତାର କରିଛନ୍ତି । ସେଥିରୁ କିଛି ଅଂଶ ଓହଳି ପଡ଼ିଯାଇ ଝଣ୍ଡେ ଝଣ୍ଡେ ତମ୍ବାର ତାର ପରି ଚକ୍‌ଚକ୍ କରୁଛନ୍ତି । କିନ୍ତୁ ସର୍ଦ୍ଦାରଜୀର ମୁହଁ ଉପରୁ ତାର ସ୍ୱାଭାବିକ ଔଜ୍ଜ୍ୱଲ୍ୟ ଲୋପ ପାଇଛି । ରାସ୍ତାର ଦୁଇପଟରେ ଏତେଗୁଡ଼ାଏ ଗାଡ଼ିକୁ ଅଟକାଇ ରଖିଥିବାର ଅପରାଧରେ ତାର ବିବେକ ଯେପରି ତାକୁ ଥରକୁ ଥର ଭର୍ତ୍ସନା କରି ଚାଲିଛି ।

ଏହା' ଭିତରେ ଜଣେ ସୁଟ୍ ଟାଇପିନ୍ଧା ସାହେବ୍ ବାବୁ ଆସି ଦର୍ଶକ ମଣ୍ଡଳୀ ଭିତରେ ଠିଆ ହେଲେଣି । ଚେହେରା, ପୋଷାକ ଦେଖୁଥିରେ ଜଣେ ଉଚ୍ଚପଦସ୍ଥ ଅଫିସରଙ୍କ ସଙ୍କେତ ସୁସ୍ପଷ୍ଟ । ସେ ବୋଧହୁଏ ହାଲ ଆସି ଗାଡ଼ିର ଲମ୍ବା ଧାଡ଼ିର ଶେଷ ଭାଗରେ ଗାଡ଼ିରଖି ଘଟଣା ବୁଝିବାକୁ ସେଠାରେ ଆସି ପହଞ୍ଚିଛନ୍ତି । ତାଙ୍କ ମୁହଁରେ ବିରକ୍ତି ସୁସ୍ପଷ୍ଟ । ସେ ବୋଧହୁଏ ଯାଉଛନ୍ତି ଏକ ପ୍ରାଣମୂର୍ଚ୍ଛା ଟୁର୍‌ରେ । ମାସର ଶେଷ ସପ୍ତାହ ପ୍ରାୟ ହୋଇଗଲା । ଯଦି ବିକାଳ ଗାଡ଼ି ନ ଚାଲିଲେ ମାସ ଶେଷର ଟୁର୍ ପ୍ରାପ୍ୟରେ ହୁଏତ ଭଟ୍ଟା ପଡ଼ିଯାଇ ପାରେ । ନିଜ କାର୍ଯ୍ୟରେ, ଦେଶରେ ଜନତା ଜନାର୍ଦ୍ଦନଙ୍କ ହିତ ଉଦ୍ଦେଶ୍ୟରେ ନିଜର ସୁଖ ନିଦ୍ରାକୁ ଜଳାଞ୍ଜଳି ଦେଇ ସଫର୍ କରୁଥିବା ଭଦ୍ରବ୍ୟକ୍ତି ଯେ, ଅତି ମାତ୍ରାରେ ବିରକ୍ତ ହୋଇ ଉଠିବେ ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ଅନ୍ୟ ଟ୍ରକ୍‌ଟି ଏଥର ଟାଣିବାକୁ ଉଦ୍ୟତ ହେଲାଣି । ଦର୍ଶନ ସିଂ ତା'ର କାର୍ଯ୍ୟ ସାରି ପ୍ରଥମଥର କୌତୂହଳ ବିନୋଦନ ପାଇଁ ଠିଆହୋଇ ରହିଥିବା ଦର୍ଶକ ମଣ୍ଡଳୀଙ୍କୁ ଉଦ୍‌ବୋଧନ ଦେଲା । ତା'ର ଦୁଇହାତ ଊର୍ଦ୍ଧ୍ୱକୁ ପ୍ରସାରିତ କରି, ସେ କେବଳ କହୁଛି, "ଆପ୍ ଲୋଗ୍ ଥୋଡା ମଦଦ୍ କିଜିୟେ—ଦଶ୍ ଆଦ୍‌ମି ହାତ୍ ଲଗାନେ ସେ ଗାଡ଼ି ଆସାନ୍‌ସେ ନିକଲ୍ ଜାଏଗା ।" ଦର୍ଶକ ମଣ୍ଡଳୀ ଭିତରୁ ଆଗକୁ ଠିଆ ହୋଇଥିବା ଲୋକମାନେ ପଛକୁ ଫେରିଲେ । ଜନତା ନିରୁତ୍ତର । ଟିପି ଟିପି ବର୍ଷା ହେଉଛି । ଦର୍ଶନସିଂ ତଥାପି ଡାକୁଛି—"ହମ୍ ପର୍ଦେଶୀ ଆଦ୍‌ମି ହେ—ଆପ୍‌ଲୋଗ୍ ଥୋଡା ମଦଦ୍ କିଜିୟେ, ନେହିଁ ତୋ ରସି ଟୁଟ୍ ଯା ସକ୍‌ତା ହେ, ଖୋଦା ଆପ୍‌କା......" ଦର୍ଶନ ସିଂର କଣ୍ଠ ହଠାତ୍ ଯେମିତ ଫାଟିଯାଇ ବେସୁରା ଶୁଣାଗଲା । ଜନତା ତଥାପି ନିରୁତ୍ତର ତଥାପି ପଶ୍ଚାତ୍‌ଗାମୀ । ନିରୁପାୟ ଦର୍ଶନ ସିଂ ଟ୍ରକ୍ ଉପରକୁ ଉଠି ଡ୍ରାଇଭର୍

ସିଟ୍‌ରେ ବସିଲା । ଚୁପ୍‌ଗୁପ୍ ନିଜକୁ ନିଜେ କହିଲା, "ଖୋଦାବଗ୍ସଏ" । ଦର୍ଶନ ସିଂର ସଙ୍କେତ ପାଇ ଆଉ ଟ୍ରକ୍‌ଟି ଟାଣିବାକୁ ଆରମ୍ଭ କଲା । ଟ୍ରକ୍‌ଟା ସତକୁ ସତ ଉପରକୁ ଉଠୁଚି ଇଞ୍ଚେ ଇଞ୍ଚେ କରି । କିନ୍ତୁ ଅସଲ ଉଠାଣିଟା ବାକି ରହିଛି । ଭୀମ ଗର୍ଜନ କରି ଟ୍ରକ୍ ଟାଣୁଚି ଆଉ ପଙ୍ଗୁ ଟ୍ରକ୍‌ଟା ଗୋଟିଏ ବାଧ ବଶିହାରୀ ପରି ଆଗକୁ ଉଠୁଚି । ଏଇ ଉଠାଣି ଉଠିଲା—ଠିକ୍ ଏଇ ମୁହୂର୍ତ୍ତରେ ଟ୍ରକ୍‌ଟା ସ୍ଥିର ହୋଇଗଲା ମୁହୂର୍ତ୍ତିକ ପାଇଁ । ଏଇ ଶେଷଥର – ଆଉ ମାତ୍ର ଧୁକ୍‌ଫୁକ୍ । ଆଧୁରି ଗର୍ଜନ କରି ଉଠିଲା ଟ୍ରକ୍‌ର ଇଞ୍ଜିନ । କିନ୍ତୁ ଗୋଟିଏ ଶବ୍ଦକରି ବନ୍ଦ ହୋଇଥିବା ତାର ଫର୍ଣ୍ଣିକ ଆଖି ପିଛୁଳାକେ ଛୁଣ୍ଡେଇ ଦେଇ ଟ୍ରକ୍‌ଟା ଅତଥରେ ଫେରି ଆସିଲା । ତା'ର ପୁରାତନ ଆଶ୍ରୟ ସ୍ଥଳୀକୁ । ତାର ହାଇ ଟାଣି ଉଠେଇବାରେ ଶେଷ ଆଶା ପବନରେ ମିଳାଇ ଗଲା । ପୁଣି ଥରେ ଦ୍ୱିତୀୟ ଅଙ୍କର ସମାପ୍ତିରେ ଜନତାର ମୃଦୁ ଗୁଞ୍ଜରଣ । କିଏ କିଏ ଫେରିବାକୁ ପଛକୁ ଘୁଞ୍ଚିଲେ ଆଉ ହବ ନାହିଁ ।

ଦର୍ଶନ ସିଂହ ଡ୍ରାଇଭର କ୍ୟାବିନ୍ ଭିତରେ ହାଲ୍ ଛାଡ଼ିଦେଇ ବସିଗଲା, ତା ପୁଣି କେଇ ମୁହୂର୍ତ୍ତ ପାଇଁ । ତା ପରେ ପରେ ପୁଣି ଥରେ ଓହ୍ଲେଇ ଆସି ଆଉ ସର୍ଦ୍ଦାରଜୀ ସହିତ ଛିଣ୍ଡି ଯାଇଥିବା ତାରଟାକୁ ହାତରେ ଏପଟ ସେପଟ କରି ପରୀକ୍ଷା କରିବାକୁ ଲାଗିଲା ।

ସାହେବ ପୋଷାକ ପିନ୍ଧା ବାବୁ ଜଣଙ୍କ ଚୁପ୍‌ଗୁପ୍ ପାଖରେ ଜଣେ ଲୋକକୁ କହିଲେ, "ପୁଲିସ୍ ଡାକ" । ଜିପ୍ ଛୁଟିଲା ଆଣିବାକୁ । ସେ ଜଣେ ବଡ଼ ଅଫିସର ହେବେ ବୋଧହୁଏ ।

ସମବେତ ଜନତା ଭିତରେ ବହୁ ମତ ଉଠୁଛି ଓ ପୁଣି ତା'ର ପ୍ରତିକୂଳ ମତରେ ତାହା ବୁଦ୍‌ବୁଦ୍ ପରି ମିଳେଇ ଯାଉଚି । କିଏ ଜଣେ କହିଲା, ଟ୍ରକ୍‌ଟାର ବୋଝ ଗୁଡ଼ାକୁ ତଳକୁ ଖସାଇ ଦିଅ । ତାହା ହେଲେ ଟ୍ରକ୍‌ଟା ଉଠିଯିବ । ଆଉ ଦଳେ ସମର୍ଥନ କଲେ, ହିଁ ହିଁ ଟ୍ରକ୍‌ର ମାଲ୍ ଖଲାସ କରି ଉଠିଯିବ । କିନ୍ତୁ କିଏ କରିବ ଦେଖିଶୁଣି ସେତିକି ମାଲ୍ ଖଲାସ ? କିଏ ତାକୁ ସଜାଇବ ବା କିଏ ପୁଣି ଥରେ ଉପରକୁ ଉଠେଇବ । ଜନତାର ହୁକୁମ ହେଲା ଦର୍ଶନ ସିଂକୁ—'ଏଇ ସେ ନେହି ହୋଗା, ମାଲ୍ ଉତର୍ ଦିଜିଏ" ।— ଏଥର ଦର୍ଶନ ସିଂର ପାଲଟା ଜବାବ ଆସିଲା, "ବାବୁଜି, ଏସେ ତୋ ଅକେଲା କର୍ ନେଇ ସକୁଙ୍ଗା । ହମ୍ ତୋ ବହୁତ୍ ସମଝ୍ ସ୍କା ଦଶ୍ ଆଦ୍‌ମୀ ହାତ୍ ଲଗାନେସେ ଉସି ବଖତ୍ ଗାଡ଼ି ଉପର୍ ଆଯାତା···" ଦର୍ଶନ ସିଂ ଦୁଇଟା ଟ୍ରକ୍‌ର ହେଡ଼ ଲାଇଟ୍ ସାମନାରେ ଠିଆ ହୋଇ ମନେ ହେଉଥାଏ ଯେପରି ସେ ଏକ ରଙ୍ଗମଞ୍ଚରେ ଏକାକୀ ଅଭିନୟ କରି ଚାଲିଛି ଓ ପ୍ରେକ୍ଷାଳୟର ନିଷ୍ପଦ ଅନ୍ଧକାର ଓ ଦୂରତ୍ୱ ଭିତରେ ବସି ଅଗଣିତ ଦର୍ଶକ ନାୟକର ଚରମ ଅସହାୟ ଭାବଟିକୁ ରୋମନ୍ଥନ କରି କରି ଆନନ୍ଦ ପାଉଛନ୍ତି ।

ଦର୍ଶନ ସିଂର ଶେଷ କେଇପଦ କଥାଥିଲା କୌତୁହଳୀ ଜନତା ପାଇଁ ଏକ ଅସହ୍ୟ ଓ ଚରମ ଆକ୍ଷେପ ।

କ୍ରୁଦ୍ଧ ଓ ଆହତ ସ୍ୱରରେ ଜନତା ଏକ ସମଷ୍ଟିଗତ ହୁକୁମ ଜାରି କଲା । "ଏତେ ଲୋକଙ୍କୁ ଅପନ୍ତରାରେ ପକାଇ ରଖି ଗୋଟେ ନାଟ ଲଗିଛୁ । ହଟାଅ ମାଲ ସବୁ...।" ଜଣେ ଦୁଇଜଣ ଉଚ୍ଚ ରାସ୍ତାର ବାଲକୋନି ସିଟ୍‌ଗୁଡ଼ି ତଳକୁ ଓହ୍ଲାଇବାକୁ ବସିଲେ ମାଲ ତଳକୁ ଖସେଇବାପାଇଁ ସାହେବ ପୋଷାକ ପିନ୍ଧା ବାବୁ ତାର ସ୍ୱରରେ ଚିତ୍କାର କଲେ—"ହଟାଓ ସବମାଲ ଅଭି ପୁଲିସ ଆନେସେ ସବ ଠିକ୍ ହୋଯାଏଗା –"। ଜଣକ ପରେ ଜଣେ ଲୋକ ଓହ୍ଲାଇ ଚାଲିଛନ୍ତି ତଳକୁ ଆଉ ଦର୍ଶନ ସିଂ ଦୁଇହାତ ବିସ୍ତାର କରି ସେମାନଙ୍କୁ ଓଗାଳି ରଖିବାକୁ ନିଷ୍ଫଳ ଚେଷ୍ଟାରେ ବିଡ଼ମ୍ବିତ ହେଉଛି ମାତ୍ର । କଣ୍ଠରେ ତା'ର ମିନତି ଓ କାରୁଣ୍ୟ ମିଶି ଏକ ଅଦ୍ଭୁତ ବେସୁରା ସ୍ୱର ଫୁଟିଚି "ବାବୁ—ଦଶଜଣ କୁଲି ଲାଗି ଯା'କୁ ସବୁ ଉପରକୁ ଉଠେଇଛନ୍ତି । ଏଠି ସବୁ ମାଲ ପକେଇଦେଲେ ଆଉ ଥରେ ଉପରକୁ ଉଠି ପାରିବ ନାହିଁ—ମୁଁ କ'ଣ କରିବ ? ମୁଁ ପଇସା ଦେବାକୁ ରାଜି ଅଛି—କେହି ହେଲେ ରାଜି ହୁଅ ମାଲ ଉତାରି ସାରି ଆଉଥରେ ଉପରକୁ ଉଠାଇଦେବ ।"

ଲୋକ ତଳକୁ ଓହ୍ଲାଇ ଆସୁଛନ୍ତି, ପୁଣି କେହି କେହି ଟ୍ରକ୍‌ର ରସି ଧରି ଉପରକୁ ଉଠି ଗଲେଣି ତ ଆଉ କିଏ ଅଧା ରାସ୍ତାରେ । ହଠାତ୍ ତା' ଭିତରୁ କିଏ କହିଲା, "ଶଳା ଓଡ଼ିଆମାନଙ୍କୁ କୁଲି ପାଇଚ ନାହିଁ—ଆମେ କୁଆଡ଼େ ପଇସା ନେଇ ଯା'ର ମାଲ ଉତାରିବୁ ଆଉ ପୁଣି ଥାକ ଥାକ କରି ସଜେଇ ଦେବୁ ।" ଜାତି ପ୍ରୀତିରେ ଉଦ୍‌ବୁଦ୍ଧ ଲୋକମାନେ ଆହୁରି ଗହଳିଆ ହୋଇ ଟ୍ରକ୍ ଧାରକୁ ଧସି ଆସୁଛନ୍ତି । ଲୋକମାନଙ୍କର ଭିଡ଼ ଉପରେ ଦର୍ଶନ ସିଂର ମଇଳା ପଗଡ଼ିର ଚୂଳ ଦେଖାଯାଉଛି । ଗୋଟିଏ ବୁଡ଼ି ଯାଉଥିବା ଜାହାଜର ମାସ୍ତୁଲ ପରି । ଲୋକେ ଓହ୍ଲେଇ ଚାଲିଛନ୍ତି । କିଏ ଜଣେ ପୁଣି ଚିତ୍କାର କରି କହିଲା, "ଯା ଭିତରେ ଅଫିମ । ଚାଲାଣ ହଉଛି, ନ ହେଲେ ମାଲ ଉତାରିବାକୁ ଏତେ ଆପତ୍ତି କାହିଁକି ?" କିଏ କହିଲା ସୁନା, କିଏ କହିଲା ଚାଉଳ—କିଏ କହିଲା ଏମାନେ ରାସ୍ତା ଉପରେ ମଣିଷକୁ ପୋକ ମାଛି ପରି ମାଡ଼ିଦଳି ଦେଇ ଯାଉଛନ୍ତି—ଆଉ କିଏ କହିଲା, ଶଳା ଦେଶୀ ମଦ ଟେକେଇଦେଇ ଏମାନଙ୍କୁ ମଣିଷ ଆଉ ଦେଖାଯାଉ ନାହାନ୍ତି ।

ଏକ ବହୁମସ୍ତକ ବିଶିଷ୍ଟ ଜନତା ଶତ ଜିହ୍ୱା ବିସ୍ତାର କରି ସେମାନଙ୍କର ଅକାଟ୍ୟ ରାୟ ଦେଇ ଚାଲିଛନ୍ତି । ଏ ବିଷୟରେ ପ୍ରତିପକ୍ଷୀ ଜବାବ ସୁଆଲ କରି ପାରିବନାହିଁ, ବା' ଏକ ତରଫା ରାୟର ଆପିଲ ମଧ୍ୟ ନାହିଁ ।

ଟ୍ରକର ଟାର୍ପୁଲିନ୍ ଉଠ ମଧ୍ୟରେ ଫୋପଡ଼ା ସରିଲାଣି ତଳକୁ ତା' ଉପରେ ପ୍ରାୟ ତିରିଶ ଜଣ ଲୋକ ଚଢ଼ି ଚାଉଳର ପେଟି ଗୁଡ଼ାକ ତଳକୁ ଫିଙ୍ଗୁଛନ୍ତି ଧୂମ୍‌ଧାମ ଭୁଷଭାଷ୍ । ପ୍ରାୟ ତିନିସେକେଣ୍ଡ ଅନ୍ତରରେ ତାଳଦେଲା ପରି ଗୋଟିଏ ଗୋଟିଏ ଚାଉଳ ତଳକୁ ପଡ଼ୁଛି ଆଉ ରେଟର ହୋଇ ଫାଟିଯାଇ ତା' ଭିତରୁ ବାହାରି ପଡ଼ୁଛି ଗୁଡ଼ାଏ ଔଷଧ ଶିଶି । ଦର୍ଶନ ସିଂର ପତ୍ତାନାହିଁ । ମାତ୍ର ୧୫ ମିନଟ ସମୟ ଭିତରେ ଟ୍ରକର ସବୁଗୁଡ଼ାକ ପେଟି ଝଡ଼ାଇ ଦିଆଗଲା, ପୋଲ ତଳର କାଦୁଅର ହ୍ରଦ ଭିତରକୁ । କେତେ ଭାଙ୍ଗି ତ କେତେ ପୂରା ପଶି ଯାଉଛି କାଦୁଅ ଭିତରେ । ପୋଲ ତଳର କର୍ଦ୍ଦମାକ୍ତ ଖାଲଟା ଖାଲି ଚାଉଳ ଆଉ ଭଙ୍ଗା ଶିଶିରେ ପୂର୍ଣ୍ଣହୋଇ ଆସିଲାଣି ପ୍ରାୟ ।

ସେଇ ସୁଟପିନ୍ଧା ଭଦ୍ରଲୋକ ଜଣକ ମଧ୍ୟ ଠିଆହୋଇ ରହି କଉତୁକମୀ ଜନତାର ଉତ୍ସାହ ସହିତ ତାଳଦେଇ ବାରମ୍ବାର ସିଗାରେଟ୍‌ଟାକୁ ଜୁହାକୁ ଜୁହା ଟାଣିଚାଲିଥିଲେ । ତାଙ୍କ ମୁହଁ ଉପରୁ ବିରକ୍ତ ଭାବଟା କଟିଯାଇ ଆତ୍ମସନ୍ତୋଷ ଓ ଆଶ୍ୱସ୍ତିର ପ୍ରଲେପରେ ମୁହଁର ମାଂସପେଶୀ ସବୁ ନରମ ଓ ମୋଲାଏମ୍ ଦେଖାଯାଉଥିଲା ।

ଜନତାର ଉତ୍ସାହ ତଥାପି କମି ନାହିଁ । ଟ୍ରକ୍ ଏକା ଥରକେ ଖାଲି । ସମସ୍ତେ ଓହ୍ଲେଇ ଆସି ଟ୍ରକ୍‌ଟାକୁ ଆଖି ପିଛୁଳାକେ ଉଟାଣି ପାର କରି ଦେଇ ଆଣି ଠିଆ କରି ଦେଲେ ପିଚ୍‌ରାସ୍ତା ଉପରେ । ତା'ପରେ ଜନତା ସନ୍ତୁଷ୍ଟ । ଆହା ! ଆମ୍ଭେମାନେ ନଥିଲେ ଆଜି ଏତେ ଲୋକ ସେମାନଙ୍କର ପିଲା କବିଲା ନେଇ କି ହଇରାଣ ହୋଇନଥାନ୍ତେ ? ପୁଲିସ୍ ଆସ୍ତୁରି ପହଞ୍ଚି ପାରିନାହିଁ । ତଥାପି କଣ୍ଟ୍ରାକ୍‌ଟର୍‌ର ହାତ ସଫେଇ କଥା ଚର୍ଚ୍ଚା କରିଯାଇ ପାରିନାହିଁ । ଟ୍ରକ୍ ଉଠୁନ ଉଠୁଣୁ ଅପେକ୍ଷା କରିଥିବା ଗାଡ଼ିସବୁ ଆଲୁଅ ଜଳେଇ, ହର୍ଣ୍ଣ ଦେଇ ଏକ ଶୃଙ୍ଖଳିତ ସୈନିକ ଶ୍ରେଣୀ ପରି ପରସ୍ପରକୁ ଅତିକ୍ରମ କରି ଦୃଷ୍ଟି ସୀମା ବାହାରକୁ ଚାଲିଗଲେ ମାତ୍ର ପାଞ୍ଚମିନଟ୍ ସମୟ ଭିତରେ । ଦୀର୍ଘ ତିନିଘଣ୍ଟା ଧରି ଚାଲିଥିବା ନାଟକର ଯବନିକା ପଡ଼ିଲା । ଦର୍ଶକମାନେ ମଉଳି ଗଲେ । ରାଜପଥର କଡ଼ରେ ଖାଲି ଠିଆ ହୋଇ ରହିଲା ଗୋଟାଏ ଶୂନ୍ୟଗର୍ଭା ଟ୍ରକ୍ ଆଉ ଡ୍ରାଇଭର୍‌ସନ୍ କଡ଼କୁ ଗୁଡ଼ାଏ ଭଙ୍ଗା ଚୁଙ୍ଗା ଚାଉଳ ଓ ସେମାନଙ୍କର ଅନ୍ତଃକୁଞ୍ଜରୁ ଫାଟେଇ ବାହାରି ଆସିଥିବା ଅନେକ ଅନେକ ଔଷଧ ବୋତଲ ସବୁ । କଦବା କ୍ୱଚିତ୍ ଯାଉଥିବା ଗାଡ଼ିର ଆଲୁଅରେ ସେଇ ଧ୍ୱଂସ ସ୍ତୁପ ମଝିରେ ମଝିରେ ଯେମିତି ଝଟେଇ ହେଉଛି ଦର୍ଶନ ସିଂକୁ ।

ରାସ୍ତାର ଏକ ଅପେକ୍ଷାକୃତ ଅନ୍ଧକାରମୟ ସ୍ଥାନରେ ଠିଆହୋଇ ରହି ଦର୍ଶନ ସିଂ ତା'ର ଜୀବନ ନାଟକର ଏକ ଚରମ ମୁହୂର୍ତ୍ତକୁ ନିବିଷ୍ଟ ଚିତ୍ତରେ ଅନୁଭବ କରୁଥିଲା । ଟ୍ରକ୍ ଉପରୁ ସମସ୍ତ ଚାଉଳ ତଳକୁ ଝାସି ଭାଙ୍ଗି ଚୂରମାର ହୋଇ ସାରିବା ପରେ

ଦର୍ଶନ ସିଂର ମୁହଁଟା ସେଇ ଅନ୍ଧାର ଭିତରେ ବି କେମିତି ବିକୃତ ହୋଇଗଲା । ଆଉ ତା ପାଟିରୁ କ'ଣ ଅଶ୍ଳୀଳ ଗାଳି ଉଚ୍ଚାରିତ ନ ହୋଇ ବାହାରି ଆସିଲା — ଆହୁରି ଖୋଜ, ତା' ଭିତରୁ ଅଫିମ, ଗୁଡ଼ୁଲ ଆଉ ଚୁନା ବାହାରିବ ।

ରାସ୍ତାଟା ସ୍ବା' ଭିତରେ ପୂରାପୂରି ନିଶୂନ୍ ହୋଇଗଲାଣି । ଦର୍ଶନ ସିଂ କ୍ଳାନ୍ତ ପାଦ ଦୁଇଟାକୁ ଟାଣି ଟାଣି ତା'ର ଟ୍ରକ୍ ପାଖରେ ପହଞ୍ଚି ଟ୍ରକ୍‌ର ଦେହ ଉପରେ ତା'ର ପାପୁଲି-ଟାକୁ ପରମ ଆଦରରେ ବୁଲେଇ ନେଲା ଥରେ । ଦର୍ଶନ ସିଂ ଜାଣେ ଯେ ଜୀବନରେ ସେ ଟ୍ରକ୍‌ର ବିକେଇଥିବା ଅଠେଇଶହଜାର କଞ୍ଚା ଟଙ୍କା ପୁଟି ପାରିବ ନାହିଁ କି ଔଷଧ ଚାଲାଣ କରୁଥିବା ବଣିକର ବହୁ ସହସ୍ର ଟଙ୍କାର କ୍ଷତିପୂରଣ କରିପାରିବ ନାହିଁ । ତା'ର ଆଖି ଆଗରେ ଟ୍ରକ୍‌ର ମାଲିକ ଟ୍ରକ୍‌ଟାକୁ ଜବତ୍ କରି ନେବ ଆଉ ଦର୍ଶନ ସିଂକୁ ବୋଧ-ହୁଏ ଜୀବନର ଅବଶିଷ୍ଟାଂଶ ଖଟିବାକୁ ପଡ଼ିବ ତାହାର କ୍ରୀତଦାସ ହୋଇ — ଆଉ ତାହାର ଟ୍ରକ୍ ଡ୍ରାଇଭର୍ ହେଇ ।

ଡ୍ରାଇଭର୍ କ୍ୟାବିନ୍ ଉପରେ ଯାଇ ବସିଲା ଦର୍ଶନ ସିଂ । ରାତି ଶେଷରେ ଚନ୍ଦ୍ର ଏକ ଜଣର କାଗଜଫୁଲ ପରି ପଶ୍ଚିମ ଆକାଶରେ ଏବେ ମଧ୍ୟ ଝୁଲି ରହିଚି । ରାତି ଆହୁରି ଚୁପ୍‌ଚାପ୍ ହୋଇଗଲାଣି । ସେଇ କୁହୁଡ଼ିଆ ଜ୍ୟୋତ୍ସ୍ନା ଭିତରେ ଦର୍ଶନ ସିଂର ମନ ପହଞ୍ଚିଗଲା ତା'ର ଗାଁର ଗହମ କ୍ଷେତକୁ । ତା'ର ଖୋପ୍‌ଡ଼ି ଭିତରେ ଦଉଡ଼ିଆ ଖଟିଆର ଅଳନ୍ତ ବାହାରକୁ ବାହାରି ଆସିଥିବ ତା'ର ମା'ର ଶେତା ଶେତା ପାଦ ଦୁଇଟି । ତା,ର ସ୍ତ୍ରୀ ବୋଧହୁଏ ନିଦ ନିଦ ଆଖିରେ ତା'ର ହାତ ଦୁଇଟିକୁ ଉପରକୁ ଟେକି ତନ୍ଦ୍ରା କଟେଇବାର ଚେଷ୍ଟା କରୁଥିବ । ଆଉ ତା'ର ଛଅବର୍ଷର ଶିଶୁକନ୍ୟା (ଯାହାର ମୁହଁ ସେ ଏବେ ବି ଦେଖି ନାହିଁ ) ତା'ର ମା'ର ସ୍ତନକୁ ଆକର୍ଷଣ କରୁଥିବ । ଦର୍ଶନ ସିଂ ଖୁବ୍ ଖୁବ୍ ଅନ୍ୟମନସ୍କ ହୋଇ ଟ୍ରକ୍‌ର ଓଜନିଆ ହାତୁଡ଼ିଟାକୁ ଧରି ତାର ମାଂସଳ ବାହୁ ଉପରେ ବାରମ୍ବାର ପିଟୁଥିଲା । ତା'ର ଖିଆଲ ନାହିଁ କେତେବେଳେ ହାତର ଗୋଟିଏ ଯାଗା ଫାଟିଯାଇ ରକ୍ତ ଝରୁଛି । ଆଉ ଦର୍ଶନ ସିଂର ଆଖିର ଲୁଣିଲୁହ ଲୁଣିଆ ରକ୍ତ ସହ ମିଶି ଏକାକାର ହୋଇ ଯାଉଅଛି । ଦର୍ଶନ ସିଂ ଆଜି କାନ୍ଦୁଛି ଅନେକ ଦିନ ପରେ ।

ପୂର୍ବ ଆକାଶ ପଟେ ସୂର୍ଯ୍ୟର ରଥ ତୀର ବେଗରେ ଛୁଟି ଆସୁଚି ଆଗକୁ ଆଗକୁ ।

—○—

# ମୂଳ

ଶାନ୍ତନୁ କୁମାର ଆଚାର୍ଯ୍ୟ

---

ଏହାର ମୂଳରେ କଅଣ ଅଛି କେହି ବୁଝିବାକୁ ଚେଷ୍ଟା କଲେ ନାହିଁ ସେତେବେଳେ। କିଛିଦିନ ଭିତରେ ଅନେକ ପାସୋରି ଦେଲେ ମଧ୍ୟ ସେ ଘଟଣାଟିକୁ। ସେମିତି କିଛି ଦେଖା-ସୁନ୍ଦର ବା ଚାଲାଖ ପିଲାଟିଏ ବି ନୁହେଁ; ଶହ ଶହ ସେ ହଜିଗଲା ସ୍କୁଲର ଅସଂଖ୍ୟ ଛାତ୍ର ଛାତ୍ରୀଙ୍କ ମଧ୍ୟରେ। ତେବେ ଜଣେ ଅଧେ ଶିକ୍ଷକ ବା ଶିକ୍ଷୟିତ୍ରୀ ସେଦିନର ସେଇ ଛୋଟ ଘଟଣାଟିକୁ ପଛରେ ବିଚାର କରି ହସିଥିବେ ଆଉ କହିଥିବେ—

"ବିଚିତ୍ର ଯୁଗ ! ବିଚିତ୍ର ପିଲା ! ଆଠ ବର୍ଷରୁ ଯୌନବିକୃତ ! ଏଃ—forget it —ଜକୁଚ୍ଛ୍ୟା କଥା।"

କିନ୍ତୁ କଣ ସେ ଘଟଣାଟି ? ଅବଶ୍ୟ ଘଟଣାଟି ବିଶେଷ କିଛି ନୁହେଁ। ଖୁବ୍ ଗୋଟାଏ ଚମକପ୍ରଦ ନୁହେଁ। ତେବେ ଯା ମୂଳରେ ଯୌନ ବିକୃତି ଯେ ନାହିଁ ତା, ବି ହୁଏତ ଦୃଢତାର ସହିତ କୁହାଯାଇ ପାରିବ ନାହିଁ। ହୁଏତ ପାରିଥାନ୍ତା ମଧ୍ୟ; କିନ୍ତୁ ପରିସ୍ଥିତିର ସ୍ୱତନ୍ତ୍ର ରଙ୍ଗ ଆଉ ସ୍ୱତନ୍ତ୍ର ଯୁକ୍ତି ବି ତ ରହିଛି।

ଘଟଣାଟି ଏଇଆ—ପିଲାଟିଏ ନୂଆ କରି ସ୍କୁଲରେ ନାଁ ଲେଖାଉଥାଏ। ଟିକିଏ ଚଗଲା ହୁରୁମା ପିଲା ବୋଲି ଅବଶ୍ୟ ଚେହେରାରୁ ଜଣାପଡ଼ି ଯାଉଥାଏ। ହେଲେ ସେ କିଛି ନୁହେଁ, ତାଠୁଁ ବଡ଼ା ତାଠୁଁ ବଡ଼ା ଚାଲାଖିଆ, କହରମୁଣ୍ଡିଆ ପିଲା ଏ ସ୍କୁଲରେ ଅଛନ୍ତି। ବଡ଼ ବଡ଼ ସାହେବଙ୍କ ପିଲା। ପ୍ରକୃତ ସାହେବଙ୍କ ପିଲା—ଗୋରା ସାହେବ ବୋଲି ତାହାଙ୍କୁ କୁହାଯାଏ—W. W. Hunter ଙ୍କ ଭଳି ଲୋକଙ୍କ ପିଲା। ତେଣୁ ସେ ଚେହେରା କଥା ନୁହେଁ, କିନ୍ତୁ ସ୍କୁଲକୁ ଆସିବାର ସାତଦିନ ଭିତରେ ତା ନାଁଆରେ ଆସିଲା ଅଭିଯୋଗ। ବଗିଚାମାଳୀ ତୋନାଲ-ମୋନାଲ ହୋଇ ଆସି ହେଡ୍‌ମାଷ୍ଟରଙ୍କ ପାଖେ ଅଭିଯୋଗ କଲା ଯେ ଗୋଟାଏ କହରମୁଣ୍ଡିଆ, କଳା, ଗେଡା ହୋଇ ପିଲାଟାଏ ବଗିଚାରୁ ଫୁଲ ଗଛ ଉପାଡିପକାଉଛି, ଆଉ ଗୋଟାଏ କଇଁଚ ଧରି ଚେର କାଟି ପକାଉଚି।

"ତେର କାଟିପକଉଛ ?"

"ଆଜ୍ଞା ହିଁ ! ବଡ ଦୁରୁମା ଅଛୁ ! ଗଛ ଦେଖିଲେ ଓଟାର ପକଉଚ ଆଜ୍ଞା ! ଦୁହିଁ ପକଉଚ ।"

ଦୁହିଁ ପକଉଚ ?

"ଆଉ ପଗୃରବାକୁ ଅଛୁ ଆଜ୍ଞା ! ବୋଗବୋର ଓଟାର ପକଉଛୁ, ମୋ ଗଛର ଚରଗୁଡ଼ାଙ୍କୁ ଆଜ୍ଞା ! ଖଗ ମୁହିଁ ଖୋର ପିଲ ଆଜ୍ଞା ! — ଗାଲ ଚପିଲେ ଦୁଧ ବାହାର ପଡ଼ତ ହେଲେ ବଚନକା କ'ଣ କମ୍ ?"

ହେଡ୍‌ମାଷ୍ଟର ଜଣେ ବସ୍ଥରବନ୍ତ ଲୋକ । ପିଲ୍‌ଟାକୁ ଡାକ ତାଗିଦ୍ କରଦେଲେ । ସେ ଜାଣିଥିଲେ ଯେ ପିଲ୍‌ଟି ସୁଧୁର ଯିବ । ଆଉ ସୁଧୁରଗଲା ବ ପିଲାଟି । ସତକୁ ସତ ଦେଖ୍ ଦେଖ୍ ପିଲାଟା ଆଉ ବଗିଚ୍ଚ ପାଖ ମାଡ଼ିଲା ନାହିଁ ।

ତେବେ ଏଇଟି ଅସଲ ଘଟଣା ନୁହେଁ ଅସଲ ଘଟଣା ଅଛୁ । ଦୁଏତ ଏଇଚ ଥିଲ ଅସ୍ତ୍ୱଆରମ୍ଭ । କେହ କେହ କହପାରନ୍ତି ଯେ ବକୃତ ଏମିତ କେତୋଟି ଘଟଣାରୁ ଆରମ୍ଭ ହୁଏ ; ଲାଇଗ୍ରେର, କଖାରୁ ଗ୍ରେର — ଗ୍ରେର ଗ୍ରେର; ବଡା ଗ୍ରେର ! — ଏଭଳ ଯୁକ୍ତି ବ ଅଛୁ । ଆଉ ସତକୁ ସତ ଗ୍ରେରବଦ୍ୟା ଯେ ଏଭଳ ପାହାଚ ପାହାଚ, ସ୍ୱାର ନମୁନା ବ ମିଳ ଗଲା ଅଳ୍ପଦନ ଭିତରେ ।

ଏଥିମଧ୍ୟରେ ସ୍କୁଲର ଲାଇବ୍ରେରିୟାନ୍‌ଙ୍କ ତରଫରୁ ହଠାତ୍ ଏକ ଅଭିଯୋଗ ଆସିଲା — ହେଡ୍‌ମାଷ୍ଟରଙ୍କ କାନକୁ । କୌଣସି ଏକ ଦାମିକା, ମୋଟା, ପିଲାଙ୍କ ଚକ ବହ ଖେଳାଉ ଖେଳାଉ ଲାଇବ୍ରେରିୟାନ୍ ସେଦନ ଆବିଷ୍କାର କଲେ ଯେ ବହ ମଲାଟ ଉପରେ କଅଣ ପଦେ ଦ'ପଦ ହାତରେ ଲେଖାଯାଇଛୁ । ବହଟା କପର ଏଭଳ ବକୃତ ହେଲା ବୋଲି ବବ୍ରତ ହୋଇପଡ଼ ଲାଇବ୍ରେରିୟାନ୍ ଚଷମା ଦେଇ ଦେଖନ୍ତି ତ ସେଥିରେ ଲେଖାହେଇଚ ଏଇ କେତୋଟି କଥା ।

"ସ୍ୱାର ସୃଷ୍ଟିକର୍ତ୍ତା କଏ ? ଜାଣିବାକୁ ଇଚ୍ଛା ଥିଲେ ଦଶ ନମ୍ବର ପୃଷ୍ଠା ଖୋଲନ୍ତୁ !"

ଚଷମା ଭାଚତକୁ ବୃଦ୍ଧ ଲାଇବ୍ରେରିୟାନ୍‌ଙ୍କର ଛୋଟ ଆଖି ଦୁଇଟି ଝଲସି ଉଠିଲା ; କନ୍ତୁ ତାଙ୍କର ଅଭିଜ୍ଞ ଅନୁସନ୍ଧିତ୍ସୁ ଆଖି ଦୁଇଟିରୁ ଲଭିଯାଇ ନ ଥିଲା ସେଇ ମୌଳକ କୌତୂହଳପୂର୍ଣ୍ଣ ପ୍ରଶ୍ନ—"ସ୍ୱାର ସୃଷ୍ଟିକର୍ତ୍ତା କଏ ?" "ର ସମାଧାନର ଜିଜ୍ଞାସା । ତେଣୁ ବହଟିର ୧୦ନମ୍ବର ପୃଷ୍ଠାଖୋଲି ବାହାରକର ପକାଇଲେ ସେ—ବୁଢା ଲାଇବ୍ରେରିୟାନ୍ ।

କଲୁ ନା; ଏତେ ସହଜ ନୁହେଁ । ପ୍ରତ୍ୟେକ ମୂଲ୍ୟବାନ୍ ବସ୍ତୁର ସୃଷ୍ଟିକର୍ତ୍ତା ସମର୍ଥୀସ୍ତ ପ୍ରଶ୍ନର ସମାଧାନ ଭଳି ବେଶ୍ ଜଟିଳ, ସର୍ପିଳ, ଆବିଳ, ପଙ୍କିଳ ଆଉ କାଳକ୍ଷେପୀ ଥିଲା ତା'ର ସମାଧାନ ।

ଲାଇବ୍ରେରିଆନ୍ ବୁଢ଼ା ଓଲଟାଇ ଚାଲିଲେ ପୃଷ୍ଠା ପରେ ପୃଷ୍ଠା ଖୋଲି ଚାଲିଲେ ସେ—ବସ୍ତୁ ପରେ ବସ୍ତୁ—ବର୍ଷ ଚାଲିଲେ ସେ—ଧୂଳ ପରେ ଧୂଳ—ମଇଳିରେ ପାଟିରେ ଆଙ୍ଗୁଠି ମାରି, ଛେପକାଟି ଓଲଟେଇ ଚାଲିଲେ ସେ, ମୋଟା ଚକବନ୍ଧର ପୃଷ୍ଠାଗୁଡ଼ିକୁ—

ଦଶ ଦେଖ—ଦେଢ଼ଶ ଉନକୋଡ଼ି—ଘରକୋଡ଼ି ଛ ଦେଖ ୧୬୬ × ୩/୯ − ୧୦୦ ÷ ୭/୪

ଇତ୍ୟାଦି ପୃଷ୍ଠା ଦେଖ ! ହରଣ ଗୁଣନ ଫେଡ଼ ମିଶା ଏବଂ ସବୁ ଶେଷରେ ଲେଖା ଥିଲା ଉତ୍ତରଟି । ବୁଢ଼ା ଲାଇବ୍ରେରିଆନ୍‌ଙ୍କ ମୁଣ୍ଡର ବାଳଗୁଡ଼ିକ ଫୁରୁ ଫୁରୁ ହୋଇ ଉଡ଼ିବାକୁ ଆରମ୍ଭ କରିଥିଲା ସେତେବେଳକୁ ତାଙ୍କ ରୁମାଲରୁ ପାଣି ଝରିପଡ଼ୁଥିଲା ସେତେବେଳକୁ ଆଉ ଫଡ଼୍-ଫାଡ଼୍ ହୋଇ କେତୋଟି ମୂଲ୍ୟବାନ ପୃଷ୍ଠା ମଧ୍ୟ ଚିରି ଯାଇଥିଲା ବହିଟିରୁ । ତାଙ୍କର ଶୁଖିଲା ଦରିଉଠା ଆଙ୍ଗୁଠି ଗୁଡ଼ିକର ଶତ୍ରୁତା ପୂର୍ଣ୍ଣ ଦଉଡ଼ା ଦଉଡ଼ିରେ ଏବଂ ସର୍ବାଶେଷରେ ସେ ପାଇଲେ ସେଇ ଉତ୍ତରଟିକୁ ଗୋଟାଏ ବିଶେଷତ୍ୱହୀନ ପୃଷ୍ଠାର ଗୋଟିଏ କୋଣରେ ଓ ସେଠି ଲେଖାଥିଲା—

'ବୁଢ଼ା ! ଘରେ ଯା'ଇ ମା'କୁ ପଚାର !'

ବୁଢ଼ାର ପିତ୍ତ ମୁଣ୍ଡ ଉପରକୁ ଚଢ଼ିଗଲା । ବୋଧହୁଏ ସେ ସନ୍ତୁଷ୍ଟ ହୋଇ ପାରିଲା ନାହିଁ ସେଇ ଆପାତତଃ ଅର୍ଥହୀନ ଉତ୍ତରରେ । ବୋଧହୁଏ ଏତେ ପରିଶ୍ରମର ମୂଲ୍ୟ ଏତିକିରେ ତୁଟିଯିବ ବୋଲି ସେ ଆଦୌ ଆଶଙ୍କା ବି କରିପାରି ନ ଥିଲା । ଏଃ ! କି ପରିଶ୍ରମ ! କେତେ ବିରକ୍ତିକର ! ହାସ୍ୟ--ବଜ୍ଜାତ ଟୋକା—ବଦମାସ—ବାସ୍ତବ ଟୋକା ! ମୋ ସାଙ୍ଗେ ବି ଦିଲ୍ଲଗୀ ! ଶାଳା—ଏଗୁଡ଼ାଙ୍କର ବାପା-ମା'ର ବି ଠିକ୍ ନାହିଁ ହୋ !

ବୁଢ଼ା ପାଚିଯାଇଥିଲା ରାଗରେ । ଭାରି ଟିଣା ଲୋକଟାଏ, ଟିଙ୍ଗିଶୁଳା ! ଖୁବ୍ ପତ୍ରେଇ ହେଲା ସେ । ଅ'ରେ ଶାଳା ! ଏ ତ ମତେ ଚଟେଇ ଦେଲା ଦିଲ୍ଲୀକା ଲଡ଼ୁ ! ଆଚ୍ଛା ରହ—

ଘରିଆଡ଼କୁ କନକନ ହୋଇ ଟିକିଏ ଚାହିଁଦେଲା ବୁଢ଼ା । ତା ପରେ ଚଟକିନି ପକେଟ୍‌ରୁ ଫାଉଣ୍ଟେନ କଲମଟି କାଢ଼ିଆଣି ସେ ଲେଖି ଦେଲା—ସେଇ ପୃଷ୍ଠାର ସେଇ କଣରେ—ସେଇ ଧାଡ଼ିର ଟିକିଏ ତଳକୁ—ଅକ୍ଷର ସହିତ ଅକ୍ଷର ମିଳେଇ ଅକ୍ଷର—ଗୋଟିଏ ଅତି ମୌଳିକ ଅର୍ଥ ବିଶିଷ୍ଟ ଶବ୍ଦ ଏଃ ! ଅତି ଅଶ୍ଳୀଳ ଶବ୍ଦଟାଏ—ଛି !

ତା ପରେ ବୁଢ଼ା ଉଠିଲା । ସିଧାସଳଖ ସେ ଚାଲିଲା ତା ପରେ ହେଡ଼ମାଷ୍ଟରଙ୍କ ଅଫିସକୁ । ସେ ଭଲକରି ଜାଣିଥିଲା ଏଥିରେ ପ୍ରକୃତ ଦୋଷୀ କିଏ ବୋଲି । ତାର ମନେଥିଲା ସ୍ପଷ୍ଟ ଭାବେ ସେ ଦିନ ସେ ଯେଉଁ ପୋଡ଼ାମୁହାଁ, ମଉନମୁହାଁ—ବଗ ବେକା ଟୋକାଏ ସେ ବହିକୁ ଚିରାଉ ଥିଲା ଭାରି ପଢ଼ୁଆ ପିଲାଭଳି ମୁହଁଟାଏ କରି—? ତାହେଲେ ସେ ଏଇଆ କରୁଥିଲା—ନାହିଁ ? ହେଁ ? ଏତେ ଫନ୍ଦି ଆସେ ତତେ ? ବହିଗୁଡ଼ାକୁ ତୁ ଏମିତି ଖରାପ କରିବୁ ?

"ଦେଖନ୍ତୁ ସାର୍, ଏ କଣ ହେଇଛି ! ସେ ବଗବେକା ଟୋକାକୁ ଏ ସ୍କୁଲରୁ ବାହାର କରନ୍ତୁ ସାର୍ !" ଲାଇବ୍ରେରିଆନ୍ କହିଦେଲେ ଏତେ ମୋଟା ବହିଟାକୁ ହେଡମାଷ୍ଟରଙ୍କ ଟେବୁଲ ଉପରେ । ଟେବୁଲ ଉପରେ ଅଖାଡ଼ୁଆ ହୋଇ ରହିଯାଇଥିବା କାଳିବୋତଲଟାଏ କେମିତି ଢଳିଗଲା ହଠାତ୍—ବୁଢ଼ାର ହାତ ବାଜିଯାଇ କମ୍ପା ମୋଟା ଓଜନଦାର ବହିଟା କଚ ହୋଇ ପଡ଼ିବାରେ ଚହଲିଗଲା ଏଆଡ଼େ ।

ହେଡ଼ମାଷ୍ଟର ଟିକିଏ ଗାରଡେଇ କରି ଗୁହିଁଲେ; କିନ୍ତୁ ବୁଢ଼ା ଲୋକଟିକୁ ଅପମାନ କରିବାକୁ ଇଚ୍ଛା ନ କରି ସେ କେବଳ ପଚାରିଲେ—"କଅଣ ହୋଇଛି ମହାଶୟ ? ସେ ପିଲାପୁଣି କଣ ବଦମାସ୍ କଲାଣି ?

"ଆଜ୍ଞା, ବଦ୍‌ମାସି ବୋଲି ବଦମାସି ? ହେଇ ଦେଖନ୍ତୁ ! ଆପଣ ଜଣେ ଖୋଲି ଦେଖନ୍ତୁ ଏ ବହିକୁ—ଆଜ୍ଞା, ଏତେ ଦାମିକା ବହିଟାଏ—ମୁଁ ମନା କରୁଥିଲି—ତଥାପି ଲାଇବ୍ରେରିରେ ପଶି କଅଣ କରିଛି ଦେଖନ୍ତୁ !

"କଅଣ କରିଛି ? ସେ ଲାଇବ୍ରେରିରେ ପଶିଲା କିପରି ? ତାକୁ ଅନୁମତି ଦେଲେ କାହିଁକି ଆପଣ ।

"ମୁଁ ଆଜ୍ଞା ଅନୁମତି ଦେଇଚି ? ତାଙ୍କୁ ମାଷ୍ଟରମାନେ ମୁହଁ ଦେଇଚନ୍ତି ଆଜ୍ଞା ! କୁଆଡ଼େ ସେ ଭଲ ପଢ଼ୁଚି—ହେଃ, ଭଲ ପଢ଼େ ନାହିଁ ଆଉ କଣ ?—"

"କିଏ ସେ ମାଷ୍ଟର ?"

"ମାଷ୍ଟର ନୁହେଁ ଆଜ୍ଞା—ମିଷ୍ଟ୍ରେସ୍ ! ମିଷ୍ଟ୍ରେସ୍ ବେନେଟ୍ ସାର୍ !"

"କିଏ ? ମିସ୍ ବେନେଟ୍ ? ସାଇନ୍ସ ଶିକ୍ଷୟିତ୍ରୀ ?"

"ହଁ ସାର୍ ! ସେଇ ମୋଟୀ—ପିଲାଟାକୁ ଖରାପ କରିଦେଲାଣି ସାର୍ ! ହେଇ ଦେଖନ୍ତୁ, ଏଠି କି ଅଶ୍ଲୀଳ କଥା ଲେଖା ହେଇଚି । ଆଉ ଅଶ୍ଲୀଳ ତ ଅଶ୍ଲୀଳ, ତାକୁ ଖୋଜିବା ପାଇଁ ପୁଣି କି ଫିକର କରିଚି ସେ ଦେଖନ୍ତୁ ! ଏଇ ଦେଖନ୍ତୁ ଏ ମଲାଟ—ଲେଖା ହୋଇଚି କଣ ଏଠି ସାର୍ ଦେଖୁଚନ୍ତି ? ଏ ହେଉଚି ପ୍ରଶ୍ନ ଆଉ ଏ ହେଉଚି ତାର ଉତ୍ତର । ଛିଃ ! ବିକୃତ ଏ ଯୁଗ ; ଆଉ ଏ ଯୁଗର ଟୁଆଗୁଡ଼ାକ ସାର୍ !"

ଆଲମାରିର ଗୋଟିଏ କଣରୁ ଅଣାଗଲା ବେତଟାଏ । ଖୁବ୍ ସରୁ ଲହୁକା ଆଉ ଚକ୍‌କଣ ବେତଟିଏ । ଯୁଗ-ଯୁଗର ଅବାଧ ସନ୍ତାନ ବାଧ୍ୟ ହୋଇଛନ୍ତି ଏଇ ପରମ ବେତର ସ୍ପର୍ଶରେ । ରାସ୍ତାକୁ ଆସିଛନ୍ତି ବହୁ ଅରାସ୍ତାର ପିଲା ।

ଆଠଦଶ ବେତରେ ପିଲାଟି ସଜାଡ଼ା ହୋଇଗଲା । ଲାଇବ୍ରେରିଆନ୍ ବୁଢାର ଅଭିଯୋଗ ଆଉ ନାହିଁ ; କିନ୍ତୁ ଏ ମିସ୍ ବେନେଟ୍ ? ୟାଙ୍କୁ କିପରି ସାଧ କରିବାକୁ ହେବ ?

ବିଜ୍ଞାନଶିକ୍ଷୟିତ୍ରୀ ମିସ୍ ବେନେଟ୍‌ଙ୍କୁ ଅଫିସକୁ ଡାକି ହେଡମାଷ୍ଟର ମହାଶୟ ତାଙ୍କୁ ଅନେକ ଜେରା କଲେ ; କିନ୍ତୁ ଫଳ କିଛି ହେଲା ନାହିଁ । ପ୍ରଥମେ ମିସ୍ ବେନେଟ୍ ଆଶ୍ଚର୍ଯ୍ୟ ହୋଇଗଲେ ।

"What ? କଅଣ କହୁଛନ୍ତି ସାର୍ ?" ତାଙ୍କର ଶରୀରରେ ଭୂକମ୍ପ ସୃଷ୍ଟି ହେଲା । ଦେହରୁ ଝାଳ ବୋହିଗଲା । ସେ ଅଦୌ ବୁଝି ପାରିଲେ ନାହିଁ ଘଟଣାର ତାତ୍ପର୍ଯ୍ୟ । ହେଡ୍‌ମାଷ୍ଟରଙ୍କ ଅଫିସରୁ ବାହାରିଆସିଲା ପରେ ମିସ୍ ବେନେଟ୍‌ଙ୍କ କୌତୂହଳ ବୃଦ୍ଧି ପାଇବାକୁ ଲାଗିଲା । 'କିଏ ସେ ପିଲା ? ସେ ମନେମନେ ଚିନ୍ତାକଲେ । "ଲାଇବ୍ରେରିଆନ୍ ବୁଢ଼ା କାହିଁକି ଏଭଳି ଏକ ଅଭିଯୋଗ ଆଣିଲେ ? ତାଙ୍କ ସହିତ ତ କୌଣସି ମତାନ୍ତର ଘଟି ନାହିଁ ! —ମିସ୍ ବେନେଟ୍ , ସ୍କୁଲର ବିଜ୍ଞାନ-ଶିକ୍ଷୟିତ୍ରୀ, ଚିନ୍ତା କରିବାକୁ ଆରମ୍ଭ କଲେ ।

ଏଥି ମଧ୍ୟରେ ଅନେକ ଦିନ ବିତିଗଲା ।

ଦିନେ ଜଣେ ଅଭିଭାବକ ହଠାତ୍ ଆସି ପହଞ୍ଚିଲେ ହେଡ୍‌ମାଷ୍ଟରଙ୍କ ଅଫିସ୍‌ରେ । ବେଶପୋଷାକରୁ ସେପରି କିଛି ସମ୍ଭ୍ରାନ୍ତ ବ୍ୟକ୍ତି ପରି ଜଣାଯାଉ ନ ଥିଲେ ଏଇ ସ୍କୁଲରେ ପଢ଼ୁଥିବା ତାଙ୍କର କୌଣସି ପିଲାର ହାନିଲାଭ ସମ୍ପର୍କରେ ବୁଝିବାକୁ ଏବଂ ସେଥି ସହିତ ପିଲାଟି ବିଷୟରେ ଏକ ନିର୍ଦ୍ଦିଷ୍ଟ ଅଭିଯୋଗ ଧରି ମଧ୍ୟ ସେ ଆସିଥିଲେ ।

"କୋଉ ପିଲାଟି ଆପଣଙ୍କର ଆଜ୍ଞା ?" ହେଡମାଷ୍ଟର ପଚାରିଲେ ।

"ସେଇ ପିଲାଟି ଆଜ୍ଞା—ତାକୁ ଡାକନ୍ତି ଟୁଲୁ ବୋଲି..."

"ଟୁଲୁ I see tools ? ମୁଁ ତ ତାକୁ ପେଚକସ୍ ବୋଲି ଡାକେ—Screw driver ଖଣ୍ଡେ ସେ !" ଦୈବଯୋଗେ ମିସ୍ ବେନେଟ୍ ମଧ୍ୟ ଅଫିସରେ ବସିଥିଲେ ।

"ଆପଣ ତାଙ୍କୁ ଲକ୍ଷ୍ୟ କରିଛନ୍ତି ? ମହାନ୍ ବଦମାସ୍ ଏକ ।"

"ମୁଁ ଜାଣେ ! ମୁଁ ଜାଣେ ! ଖୁବ୍ deep sighted—ଗଭୀର ଦୃଷ୍ଟିସମ୍ପନ୍ନ ପିଲାଟାଏ ସେ !"

"ଆପଣ ଏ ପିଲାକୁ ଜାଣନ୍ତି ମିସ୍ ବେନେଟ୍ ? ହେଡମାଷ୍ଟର ପଚାରିଲେ ।

"ମୁଁ ପଚାରି କହୁଛି—ଭାରି deep sighted !

"ଓ ! deep sighted ବାସ୍ତବିକ !" ଆଗନ୍ତୁକ ଅଭିଭାବକ କାହିଁକି କେଜାଣି ଟିକିଏ ହସି ଦେଲେ ।

ବଙ୍ଗାଳୀ ଶିକ୍ଷୟିତ୍ରୀ ମିସ୍ ବେନେଟ୍ ଜାଣି ଥିଲେ ହୁଏତ କାହିଁକି ସେ ଭଦ୍ରଲୋକ ହସିଲେ ବୋଲି । ତେଣୁ ସେ ତାଙ୍କର ସ୍କାର୍ଟଟାକୁ ଟିକିଏ ସଜାଡ଼ି ନେଲେ ।

ଚଷମା ତଳୁ ଜଣ-ଆଖିରେ ଅନେଇ ହେଡ଼ମାଷ୍ଟର ପ୍ରଶ୍ନ କଲେ ଆଗନ୍ତୁକଙ୍କୁ— "ଆପଣଙ୍କର ଅଭିଯୋଗ କଣ ଆଜ୍ଞା ?"

କୌଣସି ଏକ କାର୍ଯ୍ୟବଶତଃ ବୁଢ଼ା ଲାଇବ୍ରେରିୟାନ୍ ଆସି ପହଞ୍ଚି ଗଲେ ମଝି । "ମୁଁ ଆସିପାରେ କି ସାର୍ ? ପରଦା ଟେକି ବୁଢ଼ା ପଚାରିଲା ଓ ଠୁକୁ ଠୁକୁ ହୋଇ ଭିତରକୁ ଆସି ଗୋଟିଏ କଣ-ଚଉକିରେ ବସିପଡ଼ିବ ।

ହେଡ଼ମାଷ୍ଟର ଲକ୍ଷ୍ୟ କଲେ ବୁଢ଼ା ଲାଇବ୍ରେରିୟାନ୍‌ର କାଖତଳେ ମସ୍ତ ଏକ ମୋଟା ବହି । ମୁରୁକେଇ ହସି ହେଡ଼ମାଷ୍ଟର ଚାହିଁଲେ ଅଭିଭାବକଙ୍କ ମୁହଁକୁ ପୁଣି ଥରେ ।

"ବଡ଼ ଦୌରାତ୍ମ୍ୟ କରୁଛି ଏ ପିଲା ଘରେ ତା ମା' ଉପରେ ।" ଅଭିଭାବକ ତଳକୁ ମୁହଁ ପୋତି କହିଲେ ।

"ମା' ଉପରେ ?" ଅନ୍ୟ କଣରୁ ପ୍ରଶ୍ନ କଲେ ଲାଇବ୍ରେରିୟାନ୍ ହଠାତ୍ ।

"ମା' ଉପରେ ଦୌରାତ୍ମ୍ୟ ? ଅର୍ଥାତ୍ ? ହେଡ଼ମାଷ୍ଟର ଚଉକିରେ କଡ଼ ଲେଉଟେଇ ଉଠିଲେ ।

"ଆଉ କାହିଁ କହୁଚନ୍ତି ଆଜ୍ଞା ! ତାର ସବୁତକ ଶାଢ଼ୀ ସେ କାଟିଦେଇଛି ଆଜ୍ଞା— ଗୋଟାଏ ବ୍ଲେଡ ଧରି—କେତେବେଳେ !"

"ରକ୍ଷାକର :" ଲାଇବ୍ରେରିୟାନ୍ ବୁଢ଼ା ନିଶ୍ୱାସ ନେଲେ ।

"ଏକ୍‌ଜାକ୍‌ଟଲି—ମୁଁ ଯାହା ଭାବୁଚି—"ମିସ୍ ବେନେଟ୍ କହିଉଠିଲେ ।

"ବଡ଼ ଭୟଙ୍କର ବିକୃତି !" ହେଡ଼ମାଷ୍ଟର କଲମ କାମୁଡ଼ି ପକେଇଲେ ଓ ପଚାରିଲେ—"ଆଚ୍ଛା, ଯା ମୂଳରେ କ'ଣ ଅଛି ? ଏହା ଏକ ଯୌନ-ବିକୃତି ନୁହେଁ କି ?" ହେଡ଼ମାଷ୍ଟର ଚିନ୍ତା କରିବାକୁ ଆରମ୍ଭ କଲେ ।

"ନା, ଆଜ୍ଞା ! ଏ ଯୌନ-ବିକୃତି ନୁହେଁ । ଏ ହେଉଚି ଅର୍ଥପିପାସା ଯା ମୂଳରେ ଅଛି ଟଙ୍କା ! ତା ମା'କୁ ସେ ଟଙ୍କା ମାଗେ—ନ ଦେଲେ ଏଇଆ କରେ ! ଅଭିଭାବକ ଉତ୍ତର ଦେଲେ ।

"ନା ସାର୍ ! ସ୍ୱା ମୂଳରେ ଅର୍ଥ ନାହିଁ କି ହେଡ଼ମାଷ୍ଟର ମହାଶୟଙ୍କ କହିଲା ଭଳି ଯୌନ-ବିକୃତି ବି ନାହିଁ !" ମୁଣ୍ଡ ହଲେଇ ହଲେଇ ଚଉକି ଟାଣି ଆଉ ଟିକିଏ ପାଖକୁ ଲାଗିଆସିଲେ ବୃଦ୍ଧ ଲାଇବ୍ରେରିୟାନ୍ ।

"ତେବେ ?" ହେଡ଼ମାଷ୍ଟର ପଚାରିଲେ ।

"ସ୍ୱା ମୂଳରେ ଅଛି ଧର୍ମଭୟ ! ଅଯଥା ଧର୍ମଭୟ ! ଏଇ ଦେଖନ୍ତୁ — ଏଇ ବହି ! ସ୍ୱାକୁ ଯେ ଗ ଣଆଗାର କରିଥିଲା—ପୃଥିବୀର ବଡ଼ ବଡ଼ ଧର୍ମପ୍ରଚାରକମାନଙ୍କର ଚରିତ ଅଛି ଏଇ ମୋଟା ବହିରେ !" ଲାଇବ୍ରେରିୟାନ୍ ପୁଣି କହିଲେ, ଏବଂ ମୁଁ ଭାବୁଚି ସାର୍ ଏ ପିଲାଟିର ମା ନିଶ୍ଚୟ ଏକ ଧର୍ମପରାୟଣା ମହିଳା, ଆଉ ଯଦି ଆପଣ କିଛି ମନେ ନ କରନ୍ତି ସାର୍ - ମୁଁ ଭାବୁଛି ସେ ମହିଳା ନିଶ୍ଚୟ ଖୁବ୍ ମୋଟା — ଆମର ଏଇ ମିସ୍ ବେନେଟଙ୍କ ପରି ହାଁ ର୍ !"

ସମସ୍ତେ ଟିକିଏ ହସିଲେ—ବୃଦ୍ଧ ଲାଇବ୍ରେରିୟାନଙ୍କର ଏଇ ମନ୍ତବ୍ୟରେ । ମିସ୍ ବେନେଟ୍ ମଧ୍ୟ ଯୋଗ ଦେଲେ ସେଥିରେ; କିନ୍ତୁ ତାଙ୍କ ହସଟା ଥିଲା ଅନ୍ୟମାନଙ୍କଠୁଁ ପୃଥକ ।

ଅଭିଭାବକ ତା ପରେ ଲାଇବ୍ରେରିୟାନ୍ଙ୍କ ଯୁକ୍ତିକୁ ଖଣ୍ଡନ କରି ଉତ୍ତର ଦେଲେ । ମୁଣ୍ଡ ହଲେଇ ସେ କହିଲେ—

"ନାଁ, ନାଁ— ଆପଣଙ୍କର ଯୁକ୍ତି ଭୁଲ ନ ହୋଇପାରେ; କିନ୍ତୁ ଆପଣଙ୍କ ସିଦ୍ଧାନ୍ତ ନିଶ୍ଚୟ ଭୁଲ ! ପିଲାଟିର ମା ଆଦୌ ମୋଟା ନୁହନ୍ତି କି ଆଦୌ ଧର୍ମ ପରାୟଣା ନୁହନ୍ତି, ବୋଧହୁଏ ଅଉ ସେ ଖୁବ୍ ପତଳୀ — ପିନ୍ ପିନ୍ ପତଳୀ — ପିଲାଟି ପରି ।"

ଲାଇବ୍ରେରିୟାନ୍ଙ୍କ ମୁହଁ ଶୁଖିଗଲା । ସେ ଚୁପ୍ ହୋଇ ବସିଲେ । ଅଭିଭାବକ କହିଲେ, "ମୁଁ ଜାଣେ ସ୍ୱା ମୂଳରେ ଅଛି ଦାରିଦ୍ର୍ୟ । ପ . ସା ଲୋଭ ! ଅର୍ଥଲାଳସା— ଲାଳସାରୁ ଦୁର୍ବୁଦ୍ଧି — ତା ପରେ ପ୍ରତିହିଂସା — ଶାନ୍ତି ଚାହିଁ !"

"ଓହୋ !" ହେଡ଼ମାଷ୍ଟରଙ୍କ ମୁଣ୍ଡ ଭିତରେ ହଠାତ୍ କିଛି କଥା ସଫା ହୋଇଗଲା ପରି କି । ସେ କହି ଉଠିଲେ, "ଠିକ ଠିକ୍ । ହୁଏ ତ ଏଇ ପ୍ରତିହିଂସା ! ସେଥିପାଇଁ ସେ ଗଛ ଉପାଡ଼ି ପକାଏ ବଗିଚାରୁ ଆଉ ଗୁଡ଼ାଏ ଗଛର ଚେର କାଟିପକାଏ ! ବୁଝିଲି ! ହେଡ଼ମାଷ୍ଟର ମୁଣ୍ଡ ଝୁଙ୍କାଇ ତେଜିପଡ଼ିଲେ ସିଦ୍ଧାନ୍ତ ଆଡ଼କୁ ଓ କହିଲେ—

"ଏ ପିଲାକୁ ଯଥେଷ୍ଟ ଦଣ୍ଡ ଦଆଯିବା ଦରକାର — ଯେପରି ସେ ବୁଝିବ ଯେ ପ୍ରତିହିଂସା ପାଇଁ ପ୍ରତିହିଂସାର ପଥ; ଯଥା : ଶାରୀରିକ ଦଣ୍ଡର ପଥ ସର୍ବଦା ଉନ୍ମୁକ୍ତ ରହିଛି ଏ ଜଗତରେ । ଦାନ୍ତକୁ ଦାନ୍ତ — ନଖକୁ ନଖ ! ନଚେତ୍ କମ୍ୟୁନିଜମ୍ ପାଇଁ ପଥ ଯେ ଉନ୍ମୁକ୍ତ !"

ହଠାତ୍ ଉପସ୍ଥଙ୍କର ସବେ ମୁଣ୍ଡ ହଲାଇ ଉଠିଲେ ମିସ୍ ବେନେଟ୍ । ଏତେବେଳ ଯାକେ ଚୁପ ହୋଇ ସେ ଶୁଣି ଯାଉଥିଲେ । ସେ ଝାଡ଼ିହୋଇ ପଡିଲେ । ତାଙ୍କର ଶରୀରର ମେଦରାଶିରେ ତରଙ୍ଗ ସୃଷ୍ଟି ହେଲା ।

ହଠାତ୍ ସେ ଅଭିଭାବକଙ୍କୁ ପ୍ରଶ୍ନ କଲେ —

“ଆଚ୍ଛା ! ଆପଣ କଅଣ କରନ୍ତି ଆଜ୍ଞା ? — ମାନେ ଆପଣଙ୍କ ପେଶା ? ପୁଲିସ ? — ଗ୍ରେର ଧରିବ ? ଯଦି କିଛି ମନେ ନ କରନ୍ତି !”

ନାଁ, ନାଁ, ମୁଁ ହେଉଛି ଅର୍ଥ ବିଭାଗର ଉପଦେଷ୍ଟା — ପୁଲିସ ବୋଲି ଜାଣିଲେ କିପରି ?” ଅଭିଭାବକ ସାମାନ୍ୟ ବିରକ୍ତ ହୋଇ ଉଠିଲେ ବୋଧହୁଏ । ହେଡ଼ମାଷ୍ଟର ମିସ୍ ବେନେଟ୍‌ଙ୍କୁ ସତର୍କ ଦୃଷ୍ଟିରେ ଚାହିଁଲେ । ବୁଢ଼ା ଲାଇବ୍ରେରିଆନ୍ ଚଉକି ଟାଣିଆଣି ମିସ୍ ବେନେଟଙ୍କ ଖୁବ୍ ନିକଟରେ ବସିପଡ଼ି ତାଙ୍କ ଅନୁସ୍ୱରର ପ୍ରତ୍ୟେକ କମ୍ପନକୁ ଗ୍ରହି କହିବାକୁ ଆରମ୍ଭ କଲେ ଯେପରି — ଓଁ ! ଶାନ୍ତିଃ ! ଶାନ୍ତିଃ ! ଶାନ୍ତିଃ !

କିନ୍ତୁ ଏସବୁର ଫଳ କିଛି ହେଲାନାହିଁ । ବିଜ୍ଞାନ-ଶିକ୍ଷୟିତ୍ରୀଙ୍କ ମୌଳିକ ଓ ଧାରାବାହିକ ପ୍ରଶ୍ନ କେତୋଟିରେ ନିଜେ ଅଭିଭାବକ ଭାଙ୍ଗିଲେ ।

ସେ ଆଙ୍ଗୁଠି ଉଠେଇ ଏକ ନିର୍ଦ୍ଦିଷ୍ଟ ପ୍ରଶ୍ନ ପଚାରିଲେ ଅଭିଭାବକଙ୍କୁ । ସେ ପଚାରିଲେ —

“ଆଚ୍ଛା ! ଏ ପିଲାଟି କ’ଣ ଆପଣଙ୍କ ପୁଅ ?”

ଅଭିଭାବକ ଟିକିଏ ହଡ଼ବଡ଼େଇ ଯାଇ କହିଲେ —“ପୁଅ ନୁହେଁ ଅବଶ୍ୟ, ତେବେ ପୁତୁରା । କାହିଁକି ? ପୁତୁରା ବିଷୟରେ କଅଣ ପ୍ରଶ୍ନ କରାଯାଇ ପାରେନା ଏ ସ୍କୁଲରେ ?

“ପୁତୁରା, ହଁ; କିନ୍ତୁ ନିଜ ପୁତୁରା କି ?” ବିଜ୍ଞାନ ଶିକ୍ଷୟିତ୍ରୀ ଅଭିଭାବକଙ୍କର କୌଣସି ପ୍ରଶ୍ନକୁ କାନ ନ ଦେଇ ଜେରା କରିବାକୁ ଲାଗିଲେ ।

“ନିଜ ପୁତୁରା ନ ହେଲେ ବି — କାହିଁକି ? ମୁଁ କ’ଣ ତାଙ୍କ ପରିବାରର ଜଣେ ହିତାକାଂକ୍ଷୀ ବନ୍ଧୁ ନୁହେଁ ? ମୋର ଅଧିକାର ନାହିଁ କି ଏ ପିଲାଟିର ଭଲ ମନ୍ଦ ବୁଝିବାକୁ ! ତାର ବା’ପା ଜଣେ ଖଣି-ସୁପରଭାଇଜର ! ଦିନଯାକ ସେ ତ ଖଣି ଭିତରେ ଥାନ୍ତି । ପିଲାର ଭଲ ମନ୍ଦ କଥା ବୁଝିବାକୁ ଆସନ୍ତା କିଏ ?” ଅଭିଭାବକ ନରମି ଯାଇଥିଲେ । ମିସ୍ ବେନେଟ୍‌ଙ୍କ ଜେରା ସତେ କି ତାଙ୍କୁ ବିବ୍ରତ କରୁନଥିଲା ।

“ଏଇ ହେଉଛି କଥା !” ମିସ୍ ବେନେଟ୍ ହଠାତ୍ ଉଠିପଡ଼ିଲେ ଚଉକିରୁ ।

“କୋଉ କଥା ?” ହେଡ଼ମାଷ୍ଟର ବ୍ୟସ୍ତ ହେଲା ସ୍ୱରରେ କହିଲେ ।

ଏଇ କଥା ! ଚଟ୍‌କିନି ବୁଢ଼ା ଲାଇବ୍ରେରିଆନ୍ କାଖରୁ ମୋଟା ବହିଟାକୁ ଟାଣିନେଇ· ମଲାଟ ଉପରେ ଲେଖା ହୋଇଥିବା ଧାଡ଼ିଟିକୁ ମମତାଙ୍କ ଆଗରେ ଥୋଇଦେଲେ ମିସ୍ ବେନେଟ୍ ଆଉ କହିଲେ —

"ଦେଖନ୍ତୁ ! ତା ମୁଣ୍ଡରେ ଏଇ ପ୍ରଶ୍ନ ! ମେ ବସିବସି ପଚାରୁଛି — ସ୍ୱୀର ସୃଷ୍ଟିକର୍ତ୍ତା କିଏ ?"

"ହଁ, ହଁ, ସେ ଭଗବାନଙ୍କୁ ଖୋଜୁଛି — ବୁଢ଼ା ଲାଇବ୍ରେରିଆନ କହି ଆସୁଥିଲେ; କିନ୍ତୁ ଚୁପ୍ ହୋଇଗଲେ ।

"ଚୁପ୍ ରହନ୍ତୁ ଆଜ୍ଞା ! ଏଠି ଭଗବାନ୍ କଥା ନାହିଁ । ଏଠି ବିଶୁଦ୍ଧ ବିଜ୍ଞାନ କଥା ପଡ଼ୁଚି; ପିଲାଟା ଜନମରୁ ତା ବାପାକୁ ଦେଖୁନାହିଁ । ଘରେ ତ ସେ ଶୋଇପଡ଼ୁଚି । ସେତେବେଳେ ବି ତା'ର ବାପା ସହିତ ସମ୍ପର୍କ ନାହିଁ । ବାପା ଜଣେ ସୁପରଭାଇଜର୍ ! ସକାଳୁ ସନ୍ଧ୍ୟାଯାକେ ଖଣି ଗାତ ଭିତରେ । ପିଲାଟା ମନେ ମନେ ବାପାକୁ ଖୋଜୁଚି । ଜଣେ ଗାତ ପାଖକୁ ଯାଇ ହୁଏ ତ ଗାତ ଭିତରକୁ ଚାହୁଁଚି — ତେଣୁ ଆସି ଗଛ ଉପାଡ଼ି ତା'ର ଚେର ପରୀକ୍ଷା କରି ଦେଖୁଛି — ଦେଖୁଛି ସେ ଗଛର ମଧ୍ୟ ଚେର ଅଛି । କିନ୍ତୁ ମଣିଷର ଚେର କେଉଁଠି ? ସେ ହୁଏ ତ ମନେ ମନେ ପଚାରୁଛି । ତେଣୁ ଆସି ସେ ବହି ଖେଳେଉଚି — ପୃଷ୍ଠା — ପୃଷ୍ଠା କରି ପଥର କାଟିଲା ପରି କାଟି କାଟି ଯାଉଚି ସେ ବହିକୁ — ଖୋଜୁଛି — କାହିଁ ସେ fossil ? ଚେର କାହିଁ ? ତେଣୁ ଆସି ସେ ମାଆକୁ ହୁଏ ତ ଆଶ୍ଚର୍ଯ୍ୟ ହୋଇ ଚାହୁଁଚି । ମାଆକୁ ହୁଏ ତ ତା'ର ପଚାରିବାର କଥା — ମୁଁ କିଏ ? ମୋର ସୃଷ୍ଟିକର୍ତ୍ତା କିଏ ? ଅର୍ଥାତ୍ ମୋର କିପରି ସୃଷ୍ଟି ହେଲା ଓ କେଉଁଠାରୁ ମୋର ଉତ୍ପତ୍ତି (— ବୁଝାଇ ଦେ, ଦେଖାଇ ଦେ ! କିନ୍ତୁ ସାହସ କରି ନ ପାରି ହୁଏ ତ ସେ ଆବିଷ୍କାର କରିବାକୁ ଚାହୁଁଚି ତା ନିଜ ପ୍ରଶ୍ନର ଉତ୍ତରକୁ ନିଜେ ନିଜେ — କିନ୍ତୁ ଏଇ ଆଗନ୍ତୁକ ଭଦ୍ରଲୋକଙ୍କ ଭୟରେ ନିଜର ଆବିଷ୍କାର ପ୍ରବୃତ୍ତିକୁ ଚରିତାର୍ଥ ନ କରିପାରି ହୁଏ ତ ପିଲାଟା ଚିରିପକାଉଚି ମା'ର ଶାଢ଼ିଗୁଡ଼ାକୁ — ଠିକ୍ ଜଣେ ବୈଜ୍ଞାନିକ ଭଳି — ଡ଼ିସେକ୍‌ସନ୍ ବାକ୍ସ ଧରି ଉଲଗ୍ନ ସତ୍ୟକୁ ଆବିଷ୍କାର କରିବାର ଆଶାରେ ଆଗେଇ ଯାଉଥିବା ଜଣେ ବୈଜ୍ଞାନିକ । ତେଣୁ ଏଥିରେ ସେକ୍‌ସ ଫେକ୍‌ସ କିଛିନାହିଁ ଆଜ୍ଞା ! ବିଶୁଦ୍ଧ ବୈଜ୍ଞାନିକର ପ୍ରଶ୍ନ ଖେଳୁଛି ତା ମୁଣ୍ଡ ଭିତରେ ! ଭେରି deep sighted ପିଲ୍ ସେ ।" ମିସ୍ ବେନେଟ୍ ଅଫିସରୁମ୍ ଛାଡ଼ି ଚାଲି ଯାଇଥିଲେ । ଏତେଗୁଡ଼ାଏ କଥା ଏକାବେଳକେ କହି ପକାଇବାରୁ ତାଙ୍କର ନିଶ୍ୱାସରେ ଟିକିଏ ବାଧା ଜନ୍ମିଥିଲା ।

ଅନ୍ୟମାନେ ପ୍ରାୟ ସନ୍ତୁଷ୍ଟ ହୋଇଯାଇଥିଲେ ମିସ୍ ବେନେଟ୍‌ଙ୍କ ସେଇ ବୈଜ୍ଞାନିକ ବିଶ୍ଳେଷଣରେ ।

ହଠାତ୍ ବୁଢ଼ା ଲାଇବ୍ରେରିଆନ୍ ଗଳାର ଝଙ୍କାର ସଫାକରି ପଚାରି ଉଠିଲେ—"ସବୁ ତ ହେଲା—ହେଲେ ମୋଟା ? ମୋଟା ବାବୁ ଆଡ଼କୁ ତା'ର ଏତେ ଦୃଷ୍ଟି କାହିଁକି ?"

ମିସ୍ ବେନେଟ୍ ବୁଲିପଡ଼ି ପଛକୁ ଚାହିଁଲେ ଆଉ ଚିତ୍କାର ହେଲାପରି କହି ଉଠିଲେ—

"ମୋଟା ? କାହିଁକି ? ତା ମା ଯେ ମୋଟୀ !"

"ନା, ନା—ତା ମା'ତ ଆଦୌ ମୋଟୀ ନୁହେଁ !" ଅଭିଭାବକ ଜଣକ ସ୍ୱପ୍ନରୁ ଉଠିଲା ଭଳି କହିଲେ, "ଏକଥା ମୁଁ ତ ଆଗରୁ କହିଛି ।"

ମୁଁ ଜାଣେ ! ମୁଁ ଜାଣେ ! ଏଠାରେ ଜନ୍ମକଲା ମା'ର କଥା ପଡ଼ୁନାହିଁ । ବୈଜ୍ଞାନିକ ଆଖିରେ ଜନ୍ମକଲା ମା କିଛି ନୁହେଁ ।"

"ତେବେ ?"

"ତେବେ ଆଉ କ'ଣ ? ଆପଣଙ୍କର ଜାଣିବା ଉଚିତ ଯେ ମୁଁ ତା'ର ଶିକ୍ଷୟିତ୍ରୀ ତେଣୁ ଧର୍ମ-ମା !

—ମୁଁ ମୋଟୀ !—ଆଉ ତା ଖଣି-ସୁପରଭାଇଜର ବାପା ଯେଉଁ ପୃଥିବୀ ପେଟରେ ପଶି କାମ କରେ—ସେ ବି ଏକ ପୃଥୁଳ-କାୟାବତୀ ପୃଥିବୀ । ବୈଜ୍ଞାନିକର ପ୍ରକୃତ ମା ଏଇ ପୃଥିବୀ !"

"ଆପଣ ତା'ର ଧରମ-ମା ?" ହଠାତ୍ ହେଡ୍‌ମାଷ୍ଟର ତେଜ ଉଠିଲେ ।

"ହଁ ସାର୍ !" ଦୃଢ଼ କଣ୍ଠରେ ସମ୍ମତି ଜଣାଇଲେ ମିସ୍ ବେନେଟ୍ !

ଚଉକି ଟାଣିନେଇ ହେଡ୍‌ମାଷ୍ଟରଙ୍କ ପାଖାପାଖି ହୋଇଯାଇ ଉତ୍କଣ୍ଠିତ ସ୍ୱରରେ କହି ଉଠିଲେ ବୁଢ଼ା ଧର୍ମପରାୟଣ ଲାଇବ୍ରେରିଆନ—

"'ମୁଁ କଅଣ କହୁଥିଲି ସାର୍ ମୁଁ ନିଜ ଆଖିରେ ସବୁ ଦେଖିଛି । ଛୁଆଗୁଡ଼ାଙ୍କୁ ଖରାପ କରିବା ମୂଳରେ ଏଇ ମାଇକିନାଗୁଡ଼ାକ ଅଛନ୍ତି ସାର୍ '—ମୋଟୀ, ସ୍କର୍ଟପିନ୍ଧା.... ମୂଲ୍ୟବାନ ବହିଟା ନଷ୍ଟ କରିଦେଲା ସାର୍—ଓଃ, କି ଭୟଙ୍କର ଅଶ୍ଳୀଳ । ପୁଣି ଧର୍ମ-ପ୍ରଚାରକମାନଙ୍କର ଜୀବନୀ ବହିଟା...."

ବୁଢ଼ାର ସ୍ୱର କମି କମି ଯାଉଥିଲା । ଶେଷକୁ ହୁଏତ ତାହା ଏକ ସ୍ୱଗତୋକ୍ତିରେ ପରିଣତ ହୋଇସାରିଥିଲା ।

କିନ୍ତୁ ଏସବୁର ତଥାକଥିତ ମୂଳ ବିଜ୍ଞାନ ଶିକ୍ଷୟିତ୍ରୀ ମିସ୍ ବେନେଟ୍ ସେ ସ୍ଥାନରେ ନ ଥିଲେ । ଦୂରରୁ, ବାରଣ୍ଡାର ଶେଷ ମୁଣ୍ଡରୁ ତାଙ୍କ ଜୋତାର ଠକ୍ ଠକ୍ ଶବ୍ଦ ଶୁଭୁଥିଲା ।

●

# ବ୍ୟାଧ

ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ର

ସକାଳୁ ସକାଳୁ ସୈନିକ ସ୍କୁଲ୍ ପାଖେଁ ବୁଲି ବୁଲି ମୁଁ ପ୍ରାତଃ ଭ୍ରମଣ ସାରି ଘରକୁ ଫେରି ବଗିଚାରେ ଚଉକିଟାଏ ପକାଇ ବସିଥାଏ । ସୂର୍ଯ୍ୟ ଉଦୟ ହୋଇ ନ ଥାନ୍ତି ଆହୁରି; କିନ୍ତୁ ଗଛଗୁଡ଼ାକ ଉପରେ, ବିଶେଷ କରି ଟେଲିଫୋନ ତାରଗୁଡ଼ାକ ଉପରେ ଅସଂଖ୍ୟ ରକମର ଚଢ଼େଇ ପୂର୍ବମୁହାଁ ହୋଇ ବସିଥାନ୍ତି । ସେମାନେ ସମସ୍ତେ ଯେ ଚୁପ୍ ହୋଇ ବସିଥାନ୍ତି ତା ନୁହେଁ, ପଟିଆ ଜଙ୍ଗଲ କି ଖଣ୍ଡଗିରି ଆଡ଼ୁ ଉଡ଼ି ଆସିଥିବା ହାତ ମୁଠାରେ ଘୁରିଟା କରି ରହୁଥିବେ, ଏତେ ସାନ ସାନ ଜୀବଗୁଡ଼ାକ ନାନା ପ୍ରକାର କିଚିରି ମିଚିରି ଧ୍ୱନି କରି ଏପଟ ସେପଟ ଏ ଡାଳରୁ ସେ ଡାଳକୁ ଡେଉଁ ଥାଆନ୍ତି । ହଠାତ୍ ପୂର୍ବ ଦିଗରେ ସିନ୍ଦୂର ଫାଟିଲା । ସୂର୍ଯ୍ୟ ଉଦୟ ହେବା ପରେ ପରେ କୁନି କୁନି ପକ୍ଷୀଙ୍କ ଚଞ୍ଚୁରେ ଲାଲ ରଙ୍ଗ ଗୁଣ୍ଡି ଦେଇ ପ୍ରବାସରୁ ଆସିଥିବା ପିତାଙ୍କ ପରି ପୂର୍ବ ଦିଗରେ ସୂର୍ଯ୍ୟ ଠିଆ ହୋଇଗଲେ । ସେତେବେଳେ ସେମାନେ 'ଜବା କୁସୁମ ସଙ୍କାଶଂ କାଶ୍ୟପେୟଂ ମହାଦ୍ୟୁତିଂ' ପ୍ରାର୍ଥନା ବନ୍ଦକରି ମୌନ ହୋଇ ଯେପରି ଧ୍ୟାନସ୍ଥ ହୋଇଗଲେ । ସେତିକବେଳେ ଉପରୁ ମୋର ଦୃଷ୍ଟି ତଳକୁ ଶ୍ରୀମତୀଙ୍କ ଡାକରେ ଫେରି ଆସିଲା ।

—ଦେଖସ ଦେଖସ, କିଏ ଦୁଇଜଣ ନୂଆ ସ୍କୁଟରଟିଏରେ କିପରି ବେଶ ପୋଷାକ ପିନ୍ଧି ସଜେଇ ହୋଇ ଆସୁଛନ୍ତି ।

ମୁଁ ମୋର କ୍ୱାର୍ଟରସ କଡେ କଡ଼େ ଯାଇଥିବା କଚ୍ଚା ରାସ୍ତାଟା ଆଡ଼କୁ ଚାହିଁଲି । ସେଥିରେ ସେମାନେ ହାଇୱେ ଆଡକୁ ଯାଉଥିଲେ । ଆସୁଥିଲେ ସୈନିକ ସ୍କୁଲ ଆଡୁ । ହଠାତ୍ ସେହି ସ୍କୁଟରଟା ବାଣୀବିହାର ମନ୍ଦିର ବ୍ଲକ ଆମ କ୍ୱାର୍ଟରସ ରାସ୍ତାରେ ମଟି ମଟିଆ ଜାଗାରେ ଅଟକିଗଲା । ସ୍କୁଟରଟା ପଛରେ ଖୁବ୍ ସୁନ୍ଦର ବ୍ଲୁ ଶାଢ଼ୀ ପିନ୍ଧି ଜଣେ ତରୁଣୀ ବନ୍ଧୁକଟାଏ ଧରି ଓହ୍ଲାଇଲେ । ଭଦ୍ରମହିଳା ବନ୍ଧୁକଟାଏ ଧରି ଓହ୍ଲାଇବା ପରେ ସୁନ୍ଦର ଓ ସ୍ୱାସ୍ଥ୍ୟବାନ୍ ଯୁବକ ଜଣକ ସ୍କୁଟର ଷ୍ଟାଣ୍ଡ ମାରି ରଖିଲେ । ତାଙ୍କ ଷ୍ଟାଣ୍ଡ୍ ମାରିବାରୁ ସେ ଅକ୍ଳେଶରେ ସ୍କୁଟରଟାକୁ ଟେକି ଅନ୍ୟ ଯେ କୌଣସି ଜାଗାରେ ରଖି

ଦେଇ ପାରିବା ପରେ ଜଣାଗଲା ଯୁବତୀଟି ହସି ହସି ବନ୍ଧୁକଟିକୁ ଯୁବକଙ୍କ ହାତକୁ ବଢ଼ାଇଦେଲା । ମୁଁ ମନେ ମନେ ଭାବିଲି ଏପରି ସୁନ୍ଦରୀ ସ୍ତ୍ରୀଙ୍କର ବନ୍ଧୁକ ଧରିବା କଣ ଦରକାର ; କିନ୍ତୁ ମୋ ଆଖିରେ ଆଖିରେ ଶ୍ରୀମତୀ ଭିଣ ଦେଖିଲେ କେଜାଣି କହିଲେ —ତମକୁ ଥଣ୍ଡା ଲାଗିବ, ବାହାରେ ଏତେ ସମୟ ବସ ନାହିଁ । ଭିତରକୁ ଚାଲ ।

ଏହି ସମୟରେ ପତ୍ନୀଙ୍କଠୁ ବନ୍ଧୁକଟି ଆଣି ଯୁବକଟି ଟେଲିଫୋନ୍ ତାରଗୁଡ଼ିକ ପ୍ରତି ବନ୍ଧୁକ ଲକ୍ଷ୍ୟକଲା । ମୋ ପାଟିରୁ ବାହାରିଗଲା—ଆରେ ଆରେ ଲୋକଟା ପକ୍ଷୀ ଶିକାର କରିବ ନା କଣ । ଏ ଭଲ ବୁଦ୍ଧି ଏତେ ସୁନ୍ଦର ଓ ସୁଖୀ ସ୍ୱାମୀ-ସ୍ତ୍ରୀଙ୍କୁ କିଏ ଦେଲାଇଲା; ହେ ପ୍ରଭୁ, ସେମାନଙ୍କୁ ଏ ଦୁର୍ବୁଦ୍ଧିରୁ ରକ୍ଷାକର !

ମୁଁ ବଗିଚାରେ ଠିଆହୋଇପଡ଼ି ମାରନ ମାରନ ପିଲେ, ମୁହଁରେ ଲୁହ, ନୂଆ ବସ୍ତ୍ର ହୋଇନ ନଷ୍ଟପ୍ରୟ, ମୁଖରେ ରୁଦ୍ଧ ପିଲେ, 'ପକ୍ଷୀଙ୍କୁ ମାରନ' ବୋଲି କହିବାକୁ ଯାଉଥିଲି । ମୁଁ କିଛି କହୁ କହିବା ପୂର୍ବରୁ ଠାଏ କିନା ଶବ୍ଦଟାଏ ଶୁଭିଥିଲା । ଋଷିମାନେ ଛନ୍‌ଛନ ହୋଇଯିବା ପରେ ପକ୍ଷୀଗୁଡ଼ାକ ବିଭିନ୍ନ ଦିଗକୁ ଉଡ଼ି ଯାଉଥିଲେ । କିଛି ଶବ୍ଦ, କିଛି ଧୂଆଁ । ସ୍ତ୍ରୀ ଲୋକଟି ପ୍ଲାଷ୍ଟିକ୍ ବ୍ୟାଗଟିଏ ଧରି ସ୍ୱାମୀ ଦେଖାଉଥିବା ଦିଗଗୁଡ଼ିକ ଆଡକୁ ଦଉଡ଼ିଯାଇ ମୃତ, ଅର୍ଦ୍ଧମୃତ ପକ୍ଷୀଗୁଡ଼ିକୁ ଗୋଟାଇବାକୁ ଲାଗିଲା । ସେ ତା'ର ବ୍ଲୁଶାଢ଼ୀକୁ ଟେକି ଦଉଡ଼ି ଦଉଡ଼ି ପକ୍ଷୀଗୁଡ଼ିକୁ ଗୋଟାଇବା ମଧ୍ୟ ଅଦ୍ଭୁତ ଭାବେ ଆକର୍ଷଣୀୟ ଥିଲା—ଦେବୀଙ୍କ ପୂଜାପାଇଁ ମନ୍ଦାରଫୁଲ ତୋଳିବା ପରି । ବନ୍ଧୁକଟିକୁ ଖାକି କଲା ଖୋଲ ଭିତରେ ପୁରାଇ ବୋତାମ ଲଗାଇ ଯୁବକଟି ସଫଳତା ସହକାରେ କିଛି ଆଦମ କାର୍ଯ୍ୟ ସମ୍ପାଦନା କରିଥିବା ପରି, ସ୍କୁଟରଟାକୁ ଆଉଜି ଠିଆହୋଇ ଏଣେ ତେଣେ ଚାହୁଁଥିଲା । ସେତେବେଳକୁ ମୋ ଚେୟାର ଚାରିପଟେ ମୋର ସାନ ସାନ ପିଲା ଗୁଡ଼ିକ ରୁଣ୍ଡ ହୋଇ ଯାଇଥାନ୍ତି । ସବା ସାନଟା କହିବାକୁ ଆରମ୍ଭ କରି ଦେଇଥାଏ— 'ନନା, ମୋ ପାଇଁ ବନ୍ଧୁକଟାଏ ଆଣି ଦେବତ, ମୁଁ ଚଢ଼େଇ ମାରିବ ।'

ସେମାନଙ୍କୁ ସେଇଠି ରହିବାକୁ କହି ମୁଁ ସେହି ଦମ୍ପତିଙ୍କ ପାଖକୁ ଚାଲି ଚାଲି ଗଲି । ମୁଁ ସେମାନଙ୍କ ପାଖରେ ପହଞ୍ଚିଲାବେଳକୁ ସେମାନଙ୍କ ପକ୍ଷୀ ଗୋଟାଇବା କାମ ସରିଯାଇଥାଏ । ସେମାନେ ସ୍କୁଟର ଉପରେ ବସି ସାରିଥାନ୍ତି । ଅତ୍ୟନ୍ତ ଆତ୍ମୀୟତାର ସୂଚନା ଦେଇ ଯୁବତୀଟି ଯୁବକଟିର କାନ୍ଧରେ ହାତଟିଏ ପକାଇ ସାରିଥାଏ ।

—ଆପଣମାନେ ନିରୀହ ପକ୍ଷୀଗୁଡ଼ାଙ୍କୁ କାହିଁକି ମାଇଲେ ? ଏଇଟା ପକ୍ଷୀ-ଶିକାର ପାଇଁ କଣ ଜାଗା ? ଏଇଟା ପରା ବାଣୀ-ବିହାର ।

—ସାର୍, ନମସ୍କାର । ଆପଣ ଆମମାନଙ୍କୁ ଚିହ୍ନି ପାରୁ ନାହାନ୍ତି । ମୁଁ ପରା ଆପଣଙ୍କ ଛାତ୍ର ସାନବନ୍ଧୁ, ଏ ପରା ସୁପ୍ରିୟା !

— ଚଳିଲ, ଚଳିଲ । ହେଲେ ପକ୍ଷୀଗୁଡ଼ାଙ୍କୁ ମାରିଲ କାହିଁକି ? ତୁମେ ତ ଆଗରୁ ପକ୍ଷୀ ମାରୁ ନ ଥିଲ !

— ନା ସାର, ଟ୍ରେନିଂ ପିରିଅଡ଼ରେ ବନ୍ଧୁକ ମାରିବାଟା ଶିଖିଗଲି । ଇନ୍‌ଷ୍ଟିଚ୍ୟୁଟ୍‌ରେ ଥିବ ବେଳେ ପକ୍ଷୀ-ମାଂସ ଖାଇବାକୁ ମିଳିଲା । ଖୁବ ସ୍ୱାଦିଷ୍ଟ, ସାର୍ ! ଆପଣ ଖାଇଛନ୍ତି କେବେ ?

—ନା, ମୁଁ ଖାଇନି ।

ସାର୍ ! ଆଜି ଆପଣଙ୍କୁ ନିମନ୍ତ୍ରଣ ଦଉଛି । ଆପଣ ଆମ ବସାଘରକୁ ଆସି ନ ଥିଲେ, ଆଜି ଆସନ୍ତୁ । ଆମେ ଏଥର ଲାଇନ୍‌ସ ଅଫିସ ଛକ ପାଖର କ୍ୱାର୍ଟରରେ ରହୁଛୁ । ଏବେ ଅଳ୍ପଦିନ ହେଲା ଭୁବନେଶ୍ୱରରେ ତ ପୋଷ୍ଟିଂ ହୋଇଛୁ । ଆପଣ ନିଶ୍ଚୟ ଆସିବେ, ସାର୍ । ସୁପ୍ରିୟା ଖୁବ୍ ଭଲ ରାନ୍ଧେ । ଦେଖନ୍ତୁ ତ ରନ୍ଧା ଖାଇବା ପରେ ମୁଁ କିପରି ମୋଟା ହେବାକୁ ଆରମ୍ଭ କରିଛି; କିନ୍ତୁ ଆପଣ ସାର୍ ଯେମିତି ଥିଲେ ସେହିପରି ରହିଯାଇଛନ୍ତି ।

ପ୍ରକୃତରେ ଦୀନବନ୍ଧୁ ମୋଟା ହୋଇ ଯାଇଥିଲା । ସେମାନେ ଏମ୍. ଏ. ପଢ଼ୁଥିବାବେଳେ ଦୁହିଁଙ୍କ ପ୍ରେମ କଥା ମୁଁ ଜାଣିଥିଲି । ସେମାନେ ସ୍କୁଟର ଷ୍ଟାର୍ଟ କରୁ କରୁ ସୁପ୍ରିୟା ବ୍ଲାଉଜ ଉପରୁ ଖସି ଯାଇଥିବା ଲୁଗାକୁ ସଜାଡ଼ି ନେଲା । ନୂଆ ଚେତକ ସ୍କୁଟରଟା ସେମାନଙ୍କ ସ୍ପର୍ଶ ପରେ ଦ୍ରୁତ ଗତିରେ ଯିବାପାଇଁ ବ୍ୟଗ୍ର ହୋଇ ଉଠୁଥିଲା ।

— ଦୀନବନ୍ଧୁ ତୁମେ ଆଉ କଣ ହବି ନେଲନି କାହିଁକି ? ଦୀନବନ୍ଧୁର ଡ୍ରଇଁ ରୁମ୍‌ରେ ଆମେ କଥାବାର୍ତ୍ତା କରୁଥିଲୁ ।

—ପକ୍ଷୀ ଶିକାର କରିବା ଖୁବ୍ ଭଲ ହବି ସାର୍ । ଆପଣ ତରକାରି ଖାଇସାରି ମୋତେ କହିବେ । ଆପଣ ଜାଣନ୍ତି ବନ୍‌ସୀ ପକାଇ ମାଛ ଧରିବା ଅନେକଙ୍କର ହବି । ପକ୍ଷୀ ଅଉ କଣ ? ଆକାଶର ତ’ ମାଛ । ମାଛଠୁ ଆହୁରି ସୁଆଦ । ଆଉ ସାର୍ ଖୁବ ଶକ୍ତି ପ୍ରଦାୟକ ।

ଏମ୍. ଏ. ପଢ଼ୁଥିବା ବେଳର କୌଣସି ସନ୍ଧ୍ୟାର ଗପର ଖିଅକୁ ପୁଣି ଧରିବାକୁ ଦୀନବନ୍ଧୁ ଯାଇଥିଲା ଯେପରି । ୧୬

— କିନ୍ତୁ ତୁମେ ଜାଣ ସେହି ପକ୍ଷୀ ଗୁଡ଼ାକ ଗୀତ ଗାଇପାରନ୍ତି, ବଡ଼ ନିରୀହ । ତୁମେ ମାରିବା ପୂର୍ବରୁ ସେମାନେ ସୂର୍ଯ୍ୟୋଦୟକୁ ଚାହିଁ ଚମତ୍କାର ଗୀତ ଗାଉଥିଲେ ।

—ସତେ ସାର୍ । ରୋଷେଇ ଘରୁ ଡ୍ରଇଂ ରୁମ୍ ଭିତରକୁ ପଶି ଆସି ସୁପ୍ରିୟା କହିଲା—‘ସାର୍ ଖୁବ ସେଣ୍ଟିମେଣ୍ଟାଲ ! ସାର୍ ! ଏଥର ଆସନ୍ତୁ ସବୁ ରେଡ଼ି ।’

ମୁଁ ସୁପ୍ରିୟାକୁ ଚାହିଁ ଉଠୁ ଉଠୁ ଦୀନବନ୍ଧୁକୁ ଚାହିଁଲି । ନାଁ ଦୀନବନ୍ଧୁ, ତୁମେ ସୁପ୍ରିୟା ପାଇଁ ଅନ୍ତତଃ ଏମିତି ଛାଡ଼ିଦିଅ । ସୁପ୍ରିୟାକୁ ବଡ଼ ହୋଇଛ । ତୁମେ ତ ଜୀବନରେ ସବୁକିଛି ପାଇ ସାରିଛ । ଆଉ ଏ ଜୀବ ହଂସା କାହିଁକି ?' ଦୀନବନ୍ଧୁ ନୂଆ ରଖିଥିବା ତା ନଖକୁ ଆଉଁସି ପକାଇ ସୁପ୍ରିୟା ଆଡ଼କୁ ଚାହୁଁ ଚାହୁଁ ଉଠିଲା ।

ରାତିରେ ଶୋଇସିବା ପରେ ମୁଁ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲି । ସକାଳର ସେହି ପକ୍ଷୀମାର ଦୃଶ୍ୟ ଆହୁରି ଜୀବନ୍ତ ହୋଇ ମୋ ଆଖି ଆଗକୁ ଆସିଗଲା । ଦୀନବନ୍ଧୁର ବନ୍ଧୁକର ଗୁଳି ଚଢ଼େଇଙ୍କ ଦେହରେ ବାଜି ସେମାନଙ୍କୁ ମାରି କେଉଁଠି ନ ଅଟକି ଶୂନ୍ୟରେ ବହୁ ଦୂରକୁ ଉଡ଼ିବାପରେ ବହୁ ଉପରେ, ଅନେକ ଗାଲାକ୍ସି ଉପରେ, ହାତଟିଏ ସେହି ଗୁଳିର ବିଭିନ୍ନ ଟୁକୁଡ଼ାକୁ ଏକାଠି କରି ପାପୁଲିରେ ଥୋଇ ତା ଉପରେ କଣ ଗୁଡ଼ାଏ ଲେଖିଦେଲା ଓ ଅନେକ ଘରକରା ହୋଇଥିବା ବଗ୍ରିଟ ଆଲମିରାରେ ଗୋଟିଏ ଘରେ ସେଇଟିକୁ ରଖିଦେଲା । ବୁଲେଟ୍ ସହିତ ଉଡ଼ି ଯାଇଥିବା ମୋର ଆତ୍ମା ସେ ସବୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଚାରିଲା—କଣ ଲେଖା ହେଲା ଏଥିରେ ?

—ଏ ବୁଲେଟ୍‌ରେ ଗତି କିଛି ସମୟ ପାଇଁ ବନ୍ଦ କରି ଦିଆଗଲା । ଏ ପୁଣି ଫେରିବ । ଯେଉଁବାଟେ ଯାହା ପାଖକୁ ଯେତେବେଳେ ଫେରିବ ସେହିକଥା ଲେଖା ହେଲା ।

—କିନ୍ତୁ ଏହା କଣ ଦୀନବନ୍ଧୁ ପାଖକୁ ଫେରିଯିବ ?

—ନା, ସେପରି କିଛି ଅବଶ୍ୟମ୍ଭାବୀ ନିୟମ ନାହିଁ । ଦୀନବନ୍ଧୁ ତ ଏକୁଟିଆ ହୋଇ କେହି ନାହିଁ, ସେ ଗୋଟିଏ ପରିବାରର, ସମାଜର, ସମ୍ପ୍ରଦାୟର, ପରିବେଶର, ଦେଶର, ଓ ସମୟର ଲୋକ । ସେ ଅନେକ ବହି ପଢ଼ିଛି, ଅନେକ କଥା ଶୁଣିଛି, ଅନେକ ସିନେମା, ଥିଏଟର ଦେଖିଛି । ତୁମେ ତ ତାର ଦର୍ଶନ ଅଧ୍ୟାପକ ଥିଲ !

—କିନ୍ତୁ ମୁଁ ତାକୁ ତ କେବଳ ସିମ୍ବଲିକ ଲଜିକ୍ ଓ ଉଇଟ୍‌ଗେନଷ୍ଟାଇନ୍ ପଢ଼ାଇଛି । ଏସବୁ କଥା କରିବାକୁ କେବେ କହିନି ।

—ତା ବି ଗୋଟିଏ କଥା ।

—ତା ହେଲେ ?

ଜଣେ କେହି ମହାନ୍ ବ୍ୟକ୍ତି ସମାଜ ପାଇଁ ଗୁଳିକୁ ସ୍ୱୀକାର କରିନେଇ ପାରେ ।

— ତାହାହେଲେ କ'ଣ ହେବ ?

—ଯୁଦ୍ଧରେ ଲାଇଭ୍ ଗ୍ରିନେଡକୁ ଜଣେ କେହି ପେଟରେ ଚପି ଧରିଲେ କେବଳ ସେହି ମରିଯାଏ, ତାର ସାଙ୍ଗ ସାଥୀମାନେ ବଞ୍ଚିଯାନ୍ତି । ମୋ ସ୍ୱପ୍ନ କଥା ମୁଁ ଶ୍ରୀମତୀଙ୍କୁ କହୁଥିଲି । ପିଲାମାନେ କିଛି ବୁଝୁଥିଲେ କି ନାହିଁ ମୁଁ ଜାଣିନି ।

—ସେ ହାତ କାହାର ନନା ? ଶଗ ବଳିଷ୍ଠ, ଖୁବ୍ ଲୋମଶ ଓ ବଡ ବଡ଼ ନଖ ଥିଲା ସେଥିରେ ?—ଯାନଙ୍କା ପଗ୍ଭରନ୍ତି ।

ମୋର ସ୍ୱର ଅସ୍ପଷ୍ଟ ହୋଇ ଯାଉଥିଲା ଧୀରେ ଧୀରେ ।

—ନା ଭାରୀ ସୁନ୍ଦର ହାତ, ଏପରି କୋମଳ ଓ ସୁନ୍ଦର ହାତ ମୁଁ ବର୍ଣ୍ଣନା କରି ପାରିବିନି । ସେଥିରୁ ରକ୍ତ ରକ୍ତ ପଦ୍ମଗନ୍ଧ ମଧ୍ୟ ବାହାରୁ ଥିଲା ।

ତୁମେ ସେହି ଦାୟିତ୍ୱ ନେବନାହିଁ, କୃଷ୍ଣ ?

ସେହି ଜଳଦ ଗମ୍ଭୀର ଓ କୋମଳ ସମ୍ବୋଧନରେ ମୁଁ 'ନନ୍ଦଗଲି, ନନ୍ଦଗଲି' ବୋଲି କହି ଭୂମିରେ ଲମ୍ବଦଣ୍ଡ ହୋଇ ପ୍ରଣାମ କଲି ।

ପତ୍ନୀ ବ୍ୟଗ୍ର ହୋଇ ପଗ୍ଭରିଲେ—ସେ ଯେ ହୁଅନ୍ତୁ ନା କାହିଁକି, ତୁମେ ତାଙ୍କୁ କଣ କହିଲ ? ଆମର ଦର୍କାର ନାହିଁ କିଛି । ଦୋଷ କଲା ଜଣେ ଦଣ୍ଡ ପାଇବ ଆଉ ଜଣେ !



# ଅଚନା ଅଚନି ବନ୍ଧୁ

ଅଚ୍ୟୁତାନନ୍ଦ ପଣ୍ଡ

---

ସୁଧୁମା ଆସିଛି । ଗୁଲୁର ଫୁରସତ୍ ନାହିଁ କି ସୁଧୁମାର କାନକୁ ଡର ନାହିଁ । ବଚରା ବୁଢ଼ୀଟାକୁ ଟଣା ଓଟରା କରି ନାକେଦମ୍ କରି ପକାଉଛି । ବୁଢ଼ୀକୁ ବହୁତ କଥା ଶୁଣିବାକୁ ହେବ—ଦେଖିବାକୁ ବି ହେବ । ଖାଲି ଶୁଣିଲେ କି ଦେଖିଲେ ଚଳିବ ନାହିଁ । ଗୁଲୁ ଯାହା କହୁଛି, ସୁଧୁମା ଆଗରୁ ନିଶ୍ଚୟ ଜାଣିଥିବ । ସେ ଯଦି ନ ଜାଣିଛି, ତେବେ ବୁଢ଼ୀର ଆଉ ରକ୍ଷା ନାହିଁ । ଯାଉଁଣୁ ଆସୁଣୁ ଖୁଣ୍ଟା ଦେଇ ଦେଇ ଟାହୁଲି କରି କରି ପିଛା ଧରିଥିବ । ସେ ଏହା ଭିତରେ କେତେ କଥା ଶିଖିଛି—କେତେ ରକମ ବଢ଼ିଆ ଜିନିଷ ସବୁ ଦେଖିଛି । ସେ ପାଞ୍ଚ ପୃଷ୍ଠା ଇଂରେଜୀ ବହି ପଢ଼ିଛି । କେତେ ରକମ ଛୁପା ତଳେ ନାଲି ନାଲି ଅକ୍ଷରରେ ଇଂରେଜୀ ଲେଖା ହୋଇଛି । ବୁଢ଼ୀ ଗୁହାଳ ପୋଛୁ ପୋଛୁ ଇଂରେଜୀ ବହି ନେଇ ତାକୁ ଦେଖାଇ ପଢ଼ିବାକୁ କହିବ ବୁଢ଼ୀ ତ ପଢ଼ି ପାରିବନି । ତାକୁ ସେଇଠୁଁ କୁକୁର ଇଂରେଜୀ 'ଡଗ୍, ଗାଈ ଇଂରେଜୀ 'କାଓ' ଶିଖିବାକୁ ହେବ । ବୁଢ଼ୀ ତା ସାଙ୍ଗରେ ନ ପଢ଼ିଲେ ଯାଏ ତାକୁ କିଛି କାମ କରେଇ ଦେବନି । ବାଉଁଶ ବତାରେ ରଙ୍ଗୀନ୍ କାଗଜର ପତାକା ମରିହେଇ ପୋତା ହୋଇଛି । ବୁଢ଼ୀକୁ ବୁଝିବାକୁ ପଡ଼ିବ ସେଟା ଜାତୀୟ ପତାକା, ସ୍କୁଲରେ ଅଗଷ୍ଟ ପନ୍ଦର ତାରିଖ ଦିନ ଜାତୀୟ ପତାକା ଉଡ଼ା ହୋଇଥିଲା । ବାଉଁଶଟା କେତେ ନା କେତେ ଉଞ୍ଚା, ଏକଦମ ସରଗକୁ ଛୁଇଁଥାଏ । ପିଲା ସବୁ ଗୋଲ ହୋଇ ଠିଆ ହୋଇ ଗୀତ ବୋଲିଲେ । ସେ ଗୀତଟା ଲେଖି ଆଣିଛି । ବୁଢ଼ୀକୁ ଟାଣି ଟାଣି ଆଣି ବହି ରଖିବା ବେଗ୍‌ରୁ ଗୋଟେ ପୁରୁଣା ଖୋଳ ଭିତରୁ ଖଣ୍ଡେ କାଗଜ କାଢ଼ି ଗୀତ ଦେଖେଇବ । ବୁଢ଼ୀକୁ ତା ସାଙ୍ଗରେ ବୋଲିବାକୁ କହିବ—ଜନଗଣ ମନ ଅଧିନାୟକ ଜ....ୟୁ....ହେ । ହଁ ସେ ଫୁଟ୍‌ବଲ ଖେଳ ଦେଖି ବାପାଙ୍କ ସାଙ୍ଗରେ ଯାଇଥିଲା । ଇସ୍ ଗୋଟେ ଗୋଟେ ସଟ୍ ଉଡ଼ିଯାଉଥାଏ । ଫୁଟ୍‌ବଲ ଯେଉଁଠି ଖେଳନ୍ତିଏ ତାକୁ ଫିଲ୍ଡ କହନ୍ତି । ଖେଳବେଳେ ଗୁଲ ପାଖରେ ପତାକା ଉଡ଼େ । ଦୁଇପଇସିଆ ଶୁଶୁରିଟେ ଫୁଙ୍କି ଗ୍ରେଟ ବଲ୍‌ଟା ଧରି-ଗୋଡ଼ରେ ମାରିବ । ବୁଢ଼ୀ

ଦେହରେ ବଲ୍ ବାଜିଲେ ହସି ହସି ଗଡ଼ିଯିବ । ବୁଢ଼ୀ ତରତର ହୋଇ କାମରେ ଗଲାବେଳେ କୁକୁର ଛୁଆଟିକୁ ତା ଗୋଡ଼ ଭିତରେ ପୁରାଇ ଦେବ । ବୁଢ଼ୀ ହାଉଳି ଖାଇଲେ ତାଳି ପିଟି ପିଟି ଖତେଇ ହୋଇ ପଳାଇ ଆସିବ ।

ବୁଢ଼ୀ ଗୁଲୁର ଆଇମା । ଗୁଲୁର ମା' ନା ଜନ । ସମସ୍ତେ ବୁଢ଼ୀକୁ ଜନମା ବୋଲି ଡାକନ୍ତି । ଛୁଆ ଦିନେ ଗୁଲୁ ବି ଜନମା' ଶୁଣି ଶୁଣି ଡ'କିଲା । ଦିନେ ବୁଢ଼ୀ ରାଗିକରି କହିଲା —"ଜନମା କିଏରେ ? ମୁଁ ଜନମା ନୁହେଁ — ସୁଧୁମା ।" ସେହି ଦିନରୁ ଗୁଲୁର ସେ ସୁଧୁମା ହୋଇଛି । ଏତେ ଦିନ ପରେ ସୁଧୁମା ଆସିଛି ସେ କି ଆଉ ତାକୁ ଛାଡ଼େ ?

ବୁଢ଼ୀ ପାଖରେ ଗୁଲୁର ସବୁବେଳେ ଅଳି । ସେ ତାକୁ ଗପ କହି ଶୁଣେଇବ, କାଲୁରେଇ ବେଙ୍ଗକଥା, ଖୁଲଣା ସୁନ୍ଦରୀ ଗପ, କାଞ୍ଚନବତୀ କଥା, ଯେତେଥର କହିଲେ ସେ ନ ଖାଏ । ଗପ ଶୁଣୁଥିବ—ପାଟିରେ ଭାତ ପୁରାଇ ଗାଉଁ ଗାଉଁ ହୋଇ ହୁଁ ମାରୁଥିବ ଏଣେ ଖାଉଥିବ । ବୁଢ଼ୀ ଗପ ନ କହିଲେ ତ ତାର ଆଉ ରକ୍ଷା ନାହିଁ । ପଛଆଡ଼ୁ ଲୁଗା କାନିଟାକୁ ଟାଣି ଧରିବ । ରାଗରେ ସଅଁ ସଅଁ ହୋଇ ଗ୍ରେଟ ଗ୍ରେଟ ବିଧା ମାରିବ । ଜୋରରେ ମାରିବ ନି । କାଳେ ବାଜିବ, ତା ସୁଧୁମା କାଳେ କାନ୍ଦିବ । ଏଣେ ନ ମାରିଲେ ରାଗିଛି ବୋଲି ଜଣେଇବା ବା କେମିତି ? ବୁଢ଼ୀ ରାଗି କରି ହେଉ, ଖେଳରେ ହେଉ, ତାକୁ ଯାହା କହିବ, ଠିକ୍ ତାରି ପରି ଅନୁକରଣ କରି ସେ ବି ବୁଢ଼ୀକୁ କହିବ । ବୁଢ଼ୀ ନାଣଦାମୀ ନେଇ ଲୁଚେଇ ତାକୁ ଦମେ ହଇରାଣ କରିବ । ଗାଧୋଇ ଆସି ସେବାପୂଜା କଲାବେଳେ ଦର୍ପଣ ଆଣି ମୁହଁକୁ ଆଲୁଅ ପକାଇ ତାକୁ ପୂଜା କରାଇ ଦେବନି । ଚଉଁରା ମୂଳରେ ଫୁଲ ଥୋଇ ଦେଇ ପାଣି ଆଣିବାକୁ ଗଲେ ଫୁଲକୁ ନେଇ କାନରେ ଖୋସି ଚକା ଆସନ ପକାଇ ବସିଥିବ । ବୁଢ଼ୀ ଆସି ରାଗିଲେ କିଛି ନ କହି ଆଖିବୁଜି ବସିବ । ବୁଢ଼ୀ ବେଶୀ ପାଟିକଲେ କହିବ—"ମୁଁ ପା ତୋ" ଠାକୁର ଲୋ, ମୋତେ ଭୋଗ ଦେଉନୁ, ଦେଖୁନୁ ଠାକୁର କାନେ ଫୁଲ ନାଇକି ବସିଛନ୍ତି ।" ବୁଢ଼ୀ ସବୁ ରାଗ ଭୁଲିଯାଇ କାଖେଇ ଘରକୁ ନେଇଯିବ ।

ଆଜକାଲି ଟରିବେଳେ ଗୁଲୁ ଆଖିକୁ ଆଉ ନିଦ ଆସେନି । ନୂଆ ନୂଆ ଗପ ଶୁଣି ନୂଆ ନୂଆ କାମ ସବୁ କରିବାରେ ବ୍ୟସ୍ତ । ବୁଢ଼ୀ ଜବରଦସ୍ତ କରି ପାଖରେ ଶୋଇ ପକେଇବ । ସେ ଫରମାସ କରିବ ଯଦି ରଜାଘର ଗପ ବୁଢ଼ୀ କହିବ ତ ସେ ଶୋଇବ । ବୁଢ଼ୀ ରଜାଘର ଗପ ଆରମ୍ଭ କରିବ—'ରଜା ଟିଏ ଥିଲା' । ଗୁଲୁର ମନେ ପଡ଼ିଯିବ । ସେ ସାଙ୍ଗେ ସାଙ୍ଗେ ଉଠିପଡ଼ି ଇଂରେଜୀ ବହିଟା କାଢ଼ିଆଣି ଦେଖେଇବ— ରଜା ଇଂରେଜୀ ହେଉଛି କିଙ୍ଗ୍ । ରଜା କିମିତି ମୁକୁଟ ପିନ୍ଧିଛି, ବେକରେ ହାର ପକାଇଛି । ତା'ପରେ ରାଣୀ ଇଂରେଜୀ କ୍ୱିନ୍ । ରାଣୀ ହାତରେ ଶୁଆ ଧରିଛି । ହଁ,

ତାଙ୍କର ଏବେ ଯେଉଁ ଶୁଆଟା ଆସିଛି, ସେଟା ଖାଲି ପିଞ୍ଜରାଟାକୁ କାମୁଡ଼ୁଛି । ଉପର ତଳ ହୋଇ ଯାଜନ ଖୁଣ୍ଟୁଛି । ତାକୁ ଯାଜନ ଖୁଣ୍ଟ ଆସେ ଯେ । ତା'ପରେ ସେ ଉଠି ମୁଣ୍ଡକୁ ତକିଆ ଉପରେ ଦେଇ ଯାଜନ ଖୁଣ୍ଟିବ । ଓଲଟି ଯାଇ ବୁଢ଼ୀ ଉପରେ ପଡ଼ିବ । ବୁଢ଼ୀ ରାଗି ପାଟିକଲେ, ସେ କଣ କଣ ହସି ଉଠି କହିବ, "ତୁ'ଟା କଛୁ ବୁଝୁ ନାହିଁ ଲୋ ବୁଢ଼ୀ, ଏଥର ସର୍କସ ଆସିଥିଲା । ତୋ ଭଳିଆ ଗୋଟେ ମାଇକିନିଆ ତା ଗୋଡ଼ଟା ଛୁଆଙ୍କ ମୁଣ୍ଡ କାନ୍ଧରେ ବସେଇ ବୁଲଉଥିଲା । ତତେ ଇମିତ ବାଧୁଯାଉଛି ନା ?" ତା'ପରେ ପୁଣି ରଜାଘର କଥା ପଡ଼ିବ । ରଜାଟାଏ ଥିଲା—ତାର ଗୋଟିଏ ଖୁବ ସୁନ୍ଦର ଝିଅ ଥିଲା । ମଝିରେ ସେ କହି ପକାଇବ—"ଯୁଝୁମା, ରଜାଝିଅ ତୋ ଭଳିଆ ଗୋରା ତ ହୋଇଥିବ । ତୋ ବାଳ ତ ପାଚିଗଲାଣି । ତୁ କ'ଣ ଆଉ ରଜାଝିଅ ହେବୁ ? ତୁ ଅସୁରୁଣୀ ବୁଢ଼ୀ ହେଲେ ଭଲ ହେବ ।" ବୁଢ଼ୀ ହସି ହସି ତାକୁ କୋଳକୁ ଟାଣିନେବ । କହିବ,—"ନାଁ ରେ, ମୁଁ ରଜାଝିଅ ହେବି, ତୁ ପାରିଜା ପୁଅ ହେବୁ । ଫୁଲତୋଟା ମୂଳରେ ବସି ଫୁଲ ଗୁନ୍ଥିବୁ ।" ଗୁଲୁ ଉଠିପଡ଼ି ବୁଢ଼ୀ ମୁଣ୍ଡରୁ ଲୁଗା କାଢ଼ିବ । କହିବ—ଦେଖାନ୍ତ ତୋ ମୁଣ୍ଡ । ରଜାଝିଅର ତ ବାରହାତ ବେଣୀ ଥିଲା—ତୋ ମୁଣ୍ଡରେ କେତେବଡ଼ ବେଣୀ ଅଛି ମୁଁ ମାପିବି । ଇସ୍, ଏଟାର ବେଣୀ ନାହିଁ । ଏଟା କାଲେ ରଜାଝିଅ ହେବ ? ବୁଢ଼ୀ ତାକୁ ବହଲେଇ ଶୋଇ ପକାଇବ । "ଶୋଇପଡ଼, ଉଠି ଆମେ ଫୁଲ ଆଣିବା, ତୁ ଗୁନ୍ଥିବୁ" । ବୁଢ଼ୀ ମିଛରେ ଆଖି ମୁଦିବ । ଗୁଲୁ ବି ମିଛରେ ଘୁଙ୍ଗୁଡ଼ି ମାରିବ । ଟିକିଏ ଗଲେ ଗୁଲୁ ଉଠି ବୁଢ଼ୀ ଆଖିକୁ ହାତରେ ଟେକି ଦେଖିବ, ସତରେ ସେ ଶୋଇଲାଣି କି ନାହିଁ । ବୁଢ଼ୀ ହସି ପକାଇବ । ଆଉ ଦି'ଜଣ ହସି ହସି ଗଡ଼ିଯିବେ ।

ବୁଢ଼ୀ ଆଖି ଲାଗିଗଲେ ଆସ୍ତେ ଆସ୍ତେ ଗୋଡ଼ ଟିପି ଟିପି ଉଠିଯିବ । ଭଉଣୀ ଲୁଲୁକୁ ବି ଆଗରୁ ଶିଖେଇଥିବ, ସେ ଖରାବେଳେ ବାଡ଼ିକୁ ଯିବ ଗୋଟାଏ ବଢ଼ିଆ କଥା କହିବେ ବୋଲି । ଲୁଲୁ ଶୋଇ ପଡ଼ିଥିଲେ ତା'କୁ ଚିମୁଟି ଦେବ । ସେ କାନ୍ଦି ଉଠିଲେ ତା' ପାଟିରେ ଗୁଲୁ ହାତ ଦେଇ ବାଡ଼ିଆଡ଼େ ଡାକି ନେଇଯିବ । ବାଡ଼ିରୁ ବୁଲି ବୁଲି ଭଙ୍ଗା ଇଟା ଗୁଣ୍ଡ'ହୋଇ ଆସିବ । ଗୁଲୁ ଏବେ ବାପାଙ୍କ ସାଙ୍ଗରେ କଟକ ଯାଇଥିଲା । ବାପା କାଠଯୋଡ଼ିର ପଥରବନ୍ଧ ଦେଖାଇ ମର୍କତକେଶରୀ କଥା କହିଥିଲେ । ସେ ମର୍କତକେଶରୀ ହେବ । ଭଙ୍ଗା ଇଟାସବୁ ଖଞ୍ଜାହୋଇ ପଥରବନ୍ଧ ତିଆରି ହେବ । ତା ତଳକୁ ନାଳଖୋଳା ହୋଇ ପଥରବନ୍ଧ ତିଆରି ହେବ । ତା ତଳକୁ ନାଳ ଖୋଳାହୋଇ କାଠଯୋଡ଼ି ନଈ ହେବ । ପାଣି ଆଣିବେ କେଉଁଠୁ ? ଲୁଲୁ ଯିବ ଘରୁ ମାଠିଆରୁ ପାଣି ଆଣିବ । ପାଣି ଗଡ଼ାଉ ଗଡ଼ାଉ ମାଠିଆଟା ଭାଙ୍ଗିଗଲା । ମା ଉଠି ଲୁଲୁକୁ ଗାଳି ଦେଲାବେଳେ ଲୁଲୁ ଦାଣ୍ଡିଆ ମାରି ପଳାଇଲା ।

ସ୍କୁଲରୁ ଆସି ଦେଖିଲି, ଘରେ ଖୁବ୍ ଜୋରରେ ପାଟି ହେଉଛି । ବନ୍ଧ ଉପରେ ଗୁଲୁ ଗୋଡ଼ ଟେକି ରଖିଛି । ତାକୁ ସମସ୍ତେ ଘେରି ବସିଛନ୍ତି । ଗୋଡ଼ରୁ ରକ୍ତ ବୋହିଯାଉଛି । କଥା ବୁଝି ବୁଝି ପିଜୁଳି ଗଛରୁ ସେ ଖସିପଡ଼ିଛି । ଲୁନୁ କାନ୍ଦ କାନ୍ଦ ହୋଇ କହିଲି—"ବାପା, ନନା ପିଜୁଳି ଗଛରେ ଚଢ଼ି କାଞ୍ଚନବଣୀ କଥା ଭଳି ସେଗେ ଡାଳ ମଝେ ଡ଼ାଳ୍ କରୁଥିଲି । ମତେ ଗଛକୁ ଚଢ଼ିବାକୁ ଡାକିଲି । ମୁଁ ନଗଲି ବୋଲି ମତେ ମାରିବାକୁ ଆସୁ ଆସୁ ପଡ଼ିଗଲି ।"

ସେଦିନ ଲୁଲୁଟା ବି ତା ଲାଗି ମାଡ଼ ଖାଇଲି । ତାକୁ ଖେଳଣାସୁନ୍ଦରୀ ସଜେଇବା ଲାଗି ଲୁଚେଇ ମା'ର ଜର୍ଜେଟ୍ ଶାଢ଼ୀଟାକୁ ଆଣିଲି । ନିଜେ ମୁଣ୍ଡରେ ଡାଳି ଖୋସି କାଳିରେ କଣ କଣ ବେତାଳ ସାଜିଲି । ଖେଳଣାକୁ ନସୁନା ବଡ଼ ମାଠିଆ ଦେଇ ପାଣି ଆଣିବାକୁ ପଠାଇଥିଲି । ସେ ଟେକି ନ ପାରି ମଙ୍ଗଳାକୁ ଡାକିଲି । ମା ମଙ୍ଗଳା ବେତାଳକୁ ପଠାଇଲେ । ସେ ସୁଧୁମାଠାରୁ ଗପ ଶୁଣିଛି । ଲୁଲୁଟା ଯାଉଁ ଯାଉଁ ଛନ୍ଦିହୋଇ ପଡ଼ି ଶାଢ଼ୀଟାକୁ ଫାଡ଼ିଦେଲି । ମାଠୁଁ ମାଡ଼ ଖାଇଲି । ଗୁଲୁକୁ ଖୋଜିଲି ବେଳକୁ ସେ ସୁନା ପୁଅ ଭଳି ସୁଧୁମା ପାଖରେ ଆସି ଶୋଇପଡ଼ିଛି । ମୁହଁରୁ ତ ଆଉ କଣ ଲଭନ ।

ମା ବାଡ଼ିନେଇ ଗଲାବେଳକୁ ବୁଢ଼ୀର କାନ୍ଧ ଡାଙ୍କିହୋଇ ଶରଣ ପଶିଲି । ବୁଢ଼ୀମା ହାତରୁ ବାଡ଼ି ଛଡ଼ାଇନେଇ ଗୁଲୁକୁ ପଛଆଡ଼େ ଲୁଚାଇ ରଖିଲି ।

ଜନ ଆଜି କାଲି ଖୁବ ବ୍ୟସ୍ତ । ଘରେ ଦନ୍ ଦନ୍ କିଛି ନା କିଛି ପାଳି ଲାଗିଛି । ଜିନିଷପତ୍ର ନଷ୍ଟ ହେବାର ସୀମା ନାହିଁ । କେତେ ଧରିବ ? ମାରିବାକୁ ଯିବାବେଳକୁ ଟୋକାଟା ଇମିତ ଗୋଟେ ଛିଟକି କାନ୍ଦୁଛି ଯେ ହସ ମାଡ଼ୁଛି । ନ ଗଲିବେଳକୁ ଏଣେ ବି ଚଳୁନ । ଗୁଲୁର ଉପଦ୍ରବ ବଢ଼ିଗଲାଣି । ସୁଧୁମା ଆସିଛି । ତା'ର ପରବାସ୍ତ ନାହିଁ । ସେ ଜାଣେ ବୁଢ଼ୀ କାହାକୁ ତା ଦେହରେ ଟିପ ଛୁଆଁଇ ଦେବନି । ନିଜେ ପଛେ କଥା କଥାକେ ଗୁଲୁଠୁଁ ମାଡ଼ ଗୋଇଠା ଖାଇବ, ଗୁଲୁ ଦେହରେ କଏ ହାତ ଦେଲି ତ ଘନମାନ ବସି ସକେଇବ ।

ଅଇ ନାଚ ପଚାରିବେଳେ ବସି ଫୁସୁରୁଫାସର ହେଉଥିବେ । କଥା ଭିତରେ ହେଉଛି ଅଗନାଅଗନ ବନସ୍ତ କଣ ? ସେଠି କମିତକା ଗଛ ସବୁ ଅଛି ? ସେଠି ବାଘ ଅଛି ନା ଭାଲୁ ଅଛି ? ଅଛା ତାକୁ ଗୋଟେ ଭାଲୁଛୁଆ ଦେଲେ ସେ ନଗ୍ଭନ୍ତା । ତାକୁ ଭାଲୁ ନାଚ ବି ଆସେ । ତା ପରେ ଗୁଲୁ ହାତ ବଙ୍କା କରି ମୁହଁକୁ ଜକଟି ଭାଲୁ ନାଚ ନାଚବ । ସୁଧୁମା ତାକୁ କହିଦେଇଛି ଯେ ସେ ରଜାପୁଅ । ସେ ରଜାଝିଅକୁ ବାହାହେବ । ବେଳେବେଳେ ବାହାଘର କଥା ପଡ଼ିବ । ସୁଧୁମା ବାହା ହେଇଛି କି ନାହିଁ ଗୁଲୁ ପଗ୍ଭରି ପଗ୍ଭରି ବ୍ୟସ୍ତ

କରିପକାଏ । ସେ ବାହାରିଲେ ସୁଧୁମା ବି ବାହାରିବ । ସାଙ୍ଗହେଇକି ବାହାରିବେ । ନ ହେଲେ ସେ ଜମା ବାହାରିବେନି । ହଁ, ବାହାଘର ବେଳେ ତ କୁକୁର ଲୁଆଟାର ବାହାଘର ବି ହେବ ।

ବଜାରରୁ ଡରବରରେ ଫେରିଲା । ଗୁଲୁଟା ଚେନାଚୂରକୁ ଖାଇ ଭଲ ପାଏ । ଦି ଅଣାର ଚେନାଚୂର୍ ଧରି ଦାଣ୍ଡଦୁଆରୁ ଗୁଲୁ ଗୁଲୁ ଡାକି ଡାକି ଘରେ ପଶିଲା । ଦେଖିଲା, ଗୁଲୁ ଘର ଖୁଣ୍ଟରେ ବନ୍ଧା ହୋଇଛି । ଅଦ୍ଭୁତ ଚେହେରା । ମୁଣ୍ଡରେ ଖଣ୍ଡେ ଛିଟକନା ଗୁଡ଼ାହୋଇଛି । କଳା ପେଣ୍ଟ୍ ଉପରେ ଖଣ୍ଡେ ତୋରିଆ ଗାମୁଛା ଭିଡ଼ିଛି । ବେକରେ କନିଅର ଫୁଲ ଗୁନ୍ଥାହୋଇ ମାଳ ପଡ଼ିଛି । କନିଅର ଫୁଲ ନଡ଼ିଆ କାଠିରେ ଫୋଡ଼ାହୋଇ ମୁଣ୍ଡର ପାଗରେ ଚାରିଆଡ଼େ ଖୋସାହୋଇଛି । ଅଣ୍ଟାରେ ବାଉଁଶ ପାଡିଆର ଖଣ୍ଡା କନାଧଡ଼ିରେ ଛନ୍ଦାହୋଇ କଡ଼କୁ ଓହଳିଛି । ପିଠିରେ ବାଉଁଶ ବତାରେ ଧନୁ ପଡ଼ିଛି । ବତାରେ ଜାଗା ଜାଗା ସିଗାରେଟ୍ ଖୋଳର ଜରିସବୁ ମରାହୋଇଛି । ବାଉଁଶ କାଣିରେ ଶର ଅଣ୍ଟାରେ ଖୋସାଯାଇଛି । କେନ୍ଭାସ୍ ଜୋତାଟାକୁ ଇଟା ଘୋରି ରଙ୍ଗ କରାହୋଇ ମଡାହୋଇଛି । ଲୁଲୁଟାର ପିଠିରେ ଖଣ୍ଡେ ଗାମୁଛା ବନ୍ଧାଯାଇଛି । ତା ମୁହଁକୁ ପାଚିଲା ପୋଇ ମଞ୍ଜିରେ ଚନ୍ଦନ କରି ବିକୃତ କରି ଦିଆଯାଇଛି । କନାଧଡ଼ିରେ ମୋଡ଼ାହୋଇ ଲାଙ୍ଗୁଡ଼ି ତ ପଛଆଡ଼ୁ ଓହଳିଛି । ମେଞ୍ଚେ ଦରଗ୍ରେଜୀ ଘାସ ତା ପାଖରେ ପଡ଼ିଛି । ଦି'ଖଣ୍ଡ ଖବରକାଗଜ ତା ଦୁଇ ଡେଣାରେ ପକ୍ଷୀଭଳି ବନ୍ଧାହୋଇଛି । ଖୁବ ହସମାଡ଼ିଲା । ଗୁଲୁ ଖୁବ ଗମ୍ଭୀର ହୋଇ ଠିଆହୋଇଛି । କନ ଏଣେ ଘରିକି ଅସମ୍ଭାଳ—'ଦେଖୁଛ ପୁଅଙ୍କ କାଣ୍ଡ । ରଜାପୁଅ ପାରିଧି କରି ବାହାରିଛନ୍ତି । ଅଗନାଅଗନି ବନସ୍ତ ଭିତରେ ରଜାଝିଅ ଖୋଜି ବାହାରି କରିବେ । ଲୁଲୁ ତା ପକ୍ଷୀରାଜ ଘୋଡ଼ା । ଝିଅଟା ଉପରେ ଚଢ଼ି କୁଦେଇ ଦେଲା ଯେ ତା ନାକକୁ ଦେଖୁଛ ନା—ମୁଣ୍ଡକୁ ଗୁହଁ କମିଡା ପରି ପଡ଼ିଯାଇଛି । ଝିଅଟା ରଡ଼ି ରଡ଼ି ଏବେ ଟିକିଏ ଚୁପ ପଡ଼ିଛି । ଆଜି ଟୋକାକୁ ମୁଁ ପିଟି ପିଟି ସାରା କରିବି । ଖାଲି ତୁମ ବାଟକୁ ଅନେଇଥିଲି । ତା' କଥା ଆଗେ ବିଚାର କର । ଏଇ ମା ଆସି ତା ମନ ବଢ଼େଇ ଦେଇଛି । ଉପରେ ପଢ଼ି ମତେ ଯାକୁଳଉଥିଲା ଯେ, ଦେଲି ଯେ ଧଡ଼କ ହେଇ ଯାଇଁ ବାଡ଼ିରେ ବସି ଫୁଲି ଫୁଲି ହେଉଛି । ନା, ଏ ଟୋକା ମନ ବଢ଼ିଗଲାଣି, ତା କଥା ଆଗେ ବୁଝିଦେବକି ।

ଗୁଲୁକୁ ଚାହିଁଲା । ଗୋରା ତକ ତକ ମୁହଁରେ ପୋଇ ମଞ୍ଜିର ଟିପି-ଟିପି ଚିତା । ମାଡ଼ ଡରରେ ଝାଳ ଜକେଇ ଆସିଲା ବେଳକୁ ଚିତା ଗୁଡ଼ାକ ବେଶୀ ରଙ୍ଗୀନ ଓ ଜୀବନ୍ତ ହୋଇ ଉଠୁଛନ୍ତି । କୁଞ୍ଚ କୁଞ୍ଚ ମୋଟା ମୋଟା ବାଳ ଆଖି ଉପରଯାଏଁ ଲଟେଇ ପଡ଼ିଛି, ଲମ୍ବ ଲମ୍ବ ଆଖି ଭିତରେ ପହଁରିଲା ଡୋଳା ଆଉ ଆଗ ଭଳି ଖେଳୁନି—

ବେଳେ ବେଳେ କେବଳ ଛନକ ଉଠୁଛି । ମୁଁ ମୁଗ୍ଧ ହୋଇ ଚାହିଁ ରହିଲି । ଆଖି ଆଗରେ ମୋର ରୂପକଥାର ରଜାପୁଅ । ରୂପକନ୍ୟା ରଜାଝିଅର ସନ୍ଧାନରେ ବାହାରିଛି ଅଗନା ଅଗନ୍ଥ ବନସ୍ତକୁ । ହାତରେ ହତିଆର—ବେକରେ ଧନୁଶର କଡରେ ପକ୍ଷୀ ରାଜର ଘୋଡ଼ା ।

କନ ମତେ ଏମିତି ଠିଆ ହେବାର ଦେଖି ବାଡ଼ିଧରି ଦୌଡ଼ିଗଲା—"ନା, ବାପ ତ କଣ ଖେଳ ହୋଇ ଗଲେଣି, ସେ କି କମ୍ କି ? କବ କି ନା ? ଏକା ଖଣ୍ଡର ପାଖ —ପୁଅ କାହିଁକି ନାଗର ନ ହେବ ?"

ମୁଁ କନ ହାତରୁ ବାଡ଼ିଟା ଛଡ଼େଇ ନେଲି । ଗୁଲୁର କଅଁଳ ହାତ ଦିଟାକୁ ଝୁଣ୍ଟରୁ ଫିଟାଇ ଦେଲି । ସେ ଦୌଡ଼ି ବାଡ଼ିଆଡ଼େ ସୁଧୁମା ପାଖକୁ ପଳାଇଲା । ଲୁଲୁ କନକୁ ଚୁପଡ଼ଟେ ଧରି ଗୁଲୁ ପଛେ ପଛେ ଦୌଡ଼ୁ ଦୌଡ଼ୁ କହି କହିଗଲା—"ନନା ପା ଲଜା ପୁପ—ପାଣଧି କଲି ଯାଉଛି—ମୁଁ ପକ୍ଷୀରାଜ ଘୋଡ଼ା ସୁଦୁମା କହୁଥିଲା—ତୁ କାହିଁକି ମାରିଲୁ ଲେ ?"

କନ ପାଟିଟେ କରି ଦୌଡ଼ିଲା—"କ'ଣ କହିଲୁ ଲେଙ୍ଗଟୋକି ? ଏଇ ଛୁଣିକା ନାଣ୍ଡିଆ ପାଟି କରି ଘର ପୋଡ଼ିଆ ରଡ଼ି ଛାଡ଼ୁଥିଲୁ—ତତେ କାଲି ନନା ମାରି ପକାଇଲା—ବାପା ଆସିଲାବେଳକୁ ଫୁଲେଇ ହେଉଛୁ । ଚାଲ, ସମସ୍ତଙ୍କ ମଜା ବାହାର କରୁଛି ।"

ମୁଁ କନକୁ ଅଟକାଇ ନେଲି—"ରଜା ପୁଅକୁ ଅଗନା ଅଗନ୍ଥ ବନସ୍ତକୁ ଯିବାକୁ ଦିଅ କନ । ସେ ଯାଉ । ତାର ବନସ୍ତ ଅଛି । ତା'ର ରଜାଝିଅ ଅଛି । ଆମେ ସବୁ ହରାଇ ବସିଛୁ । ଆମର ବନସ୍ତ ଆଉ ଫେରି ଆସିବନି । ଆମର ଚାରିଆଡ଼େ ଖାଲି କଂକ୍ରିଟ ବାସ୍ତବତା କୁହାଟ ଛାଡ଼ୁଛି । ଅଗନାଅଗନ୍ଥ ବନସ୍ତ ସବୁଦିନ ଲାଗି ଅଦୃଶ୍ୟ ଯାଇଛି ।"



# ରାଜହଂସର ଶେଷ ଗୀତ

**ଶ୍ରୀନିବାସ ଉଦ୍‌ଗାତା**

ଅନେକ ଭିଡ଼ ହୋଇଥିଲେ ସେଇଠି ।

ସଭିଙ୍କ ମୁହଁରେ ସେଇ ଏକ ପ୍ରଶ୍ନ……'କ'ଣ ହେଲା ? ତା' ସହିତ 'କିଏ ?'

ସଭିଙ୍କ ଆଖିରେ ସେଇ ଜିଜ୍ଞାସା, କୌତୂହଳ । ଏକ ଅନୁଚ୍ଚାରିତ ପ୍ରଶ୍ନର; ଯଦିଓ ତା'ର କୌଣସି ମାନେ ନାହିଁ, ଅର୍ଥ ନାହିଁ……ନିରର୍ଥକ !

ଏଇନେ ମାଛଟି ଶାନ୍ତ ହୋଇ ଶୋଇ ଯାଇଛି । ବନସୀରେ ଲାଗି ପାଣିର ଅତଳ ଶେଯରୁ ମାଟି ଉପରକୁ ଉଠି ଆସିଲା ବେଳର ଯନ୍ତ୍ରଣା ହୁଏତ ନାହିଁ……ଶାନ୍ତ ହୋଇ ଯାଇଛି ସବୁକିଛି ।

ହଁ, କଣ ପଚାରୁଥିଲେ ସେମାନେ ? ପଚାରୁଥିଲେ……'କିଏ' ? ତାର ସଠିକ ଉତ୍ତର କାହାରି ପାଖରେ ନଥିଲା । ତା'ର ଆବଶ୍ୟକତା ବି ନ ଥିଲା । ତଥାପି ବି ସେମାନେ ବ୍ୟସ୍ତ ଥିଲେ । 'କ'ଣ ହେଲା'ର ଅନେକ ଉତ୍ତର ଥିଲା ଲୋକ ମୁହଁରେ ।

ସେ ସେମିତି ନୀରବ ଥିଲା । ସେମିତି ବଂସୀର କଣ୍ଟାରେ ଝୁଲୁଥିବା ଖାସି… ନିର୍ବିକାର, ନିସ୍ପନ୍ଦ ନିର୍ବେଦ……ବହୁ ପ୍ରଶ୍ନର ଉତ୍ତର ଆଜି ଉପହାସ ପରି ।

ଅନେକ ଭିଡ଼ ହୋଇଥିଲେ । ସଭିଏଁ ଜଣେ ଜଣକର ମୁହଁ ଚାହୁଁଥିଲେ…… ପଚାରୁଥିଲେ…କେହି ବି ଉତ୍ତର ଦେଉ ନଥିଲେ……ନୀରବତା ନଥିଲେ ବି, ଉତ୍ତର-ହୀନ ତାର ବୋଝରେ ଭାରି ଭାରି ଲାଗୁଥିଲା ।

ମୁଁ ବି ସେଇଠି ଅଟକି ଯାଇଥିଲି ।

ଅଟକି ଯାଇଥିଲି ତା'ର ନିରୀହ ଭାବ, ଅସହାୟ ଭାବ ଦେଖିବାକୁ । ସତେ ଯେପରି ଏକ ତାମସା । କିଛି ଏକ ଦେଖିବା ଭଳି ପ୍ରହସନଟିଏ………ଯାହା ଆମୋଦ ଦେଉଛି ।

ହଠାତ୍ କାନରେ ପଡ଼ିଲା । ପଣ୍ଡିତ ମହାଶୟ ଭିଡ଼ରୁ ଦୂରଛଡ଼ା ହୋଇ ରହି କହୁଥିଲେ........'ଠିକ୍ ହେଲା, ଏ ମର ଜନ୍ମରୁ ଛାଡ଼ି ପାଇଗଲା ।

କେଜାଣି କେଉଁ ଯୋନିରୁ ଆସି କେଉଁ ଯୋନିରେ ଜାତ ହେବ'! ହେଲେ ଏ ଜଗତର ଦୁଃଖ ସବୁରୁ ତ ମୁକ୍ତି ପାଇଗଲା ।

ସେ ଆପଣା ବାଟରେ ଚାଲିଗଲେ ।

ସତରେ କଣ ମୁକ୍ତି ପାଇଗଲା ସେ !

କେଜାଣି !

ପଣ୍ଡିତେ ଦୁଃଖ କରି କରି ଚାଲିଗଲେ –'ପାଣି ପାନ୍ଥୀର ଆଶା ରହିଲା ନାହିଁ ହୋ !

ଜଣେ କହିଲେ...........'ଏ ଆତ୍ମହତ୍ୟା ।'

ସେ ଜାଣିଲା ପରି କହିଲେ –'ଲୋକଟି ବୁଲି ବୁଲି ଭିକ ମାଗୁଥିଲା । କୁଷ୍ଠରୋଗୀ ବାଧୁଥିବ, ଆତ୍ମହତ୍ୟା କଲା ସେଇଥିଲାଗି ।'

କେଉଁ ଯୋନିରୁ ଆସି କେଜାଣି କେଉଁ ଯୋନିରେ ଜାତ ହେବ ! ମୁଁ ଶୁଣିଲି ପୁଣିଥରେ ପଣ୍ଡିତଙ୍କ କଥା ମୋ କାନରେ ବାଜିଲା ଭଲ ଲାଗିଲା – ସେ ବାନ୍ଧବା ଅବାନ୍ଧବା ଅନ୍ୟ ଜନ୍ମର ବାନ୍ଧବା······ପାଣି ପାନ୍ଥୀ ଏ ଲାଗି ଗୃହି ବସିବ ସିଏ !

ହେ କପାଳରେ ତା'ର ବି ଘର ଥିବ କେଉଁଠି । ଭୂଗୋଳର କେଉଁ ଅଜ୍ଞାତ ଅଜ୍ଞାତ ବନ୍ଧୁ ହିଁଏ ତ ଧରି ରଖିଥିବ ତା'ର ପରିଚୟ, ଲେଖି ରଖିଥିବ ତା'ର କଥା ଓ କାହାଣୀ, ଇତିହାସ, ସତରେ ତା'ର ଘର; ଯେଉଁଠି ତା'ର ପ୍ରତୀକ୍ଷାରେ ଅବିରତ ସଜଳ ଥିବ ଦୁଇଟି ଆଖି । ସେଇ ତା'ର ସଂସାର ସେଇ ତାର ସାଇତା ଆଉ ଅର୍ଜିତ ସୁଖ ଦୁଃଖ, ତାକୁ ଆଦରି ସିଏ ରହିଛି ।....ତା'ର ଦୁଃଖରେ ଲୁହ ଗଡ଼ାଇବାକୁ ଲୋକ ଅଛନ୍ତି....ତାର ସୁଖରେ ହସିବାକୁ ଅଛନ୍ତି ।

କ'ଣ ମିଳିବ ଏ କଥାରୁ ଏ ଯୁକ୍ତିରୁ ! କଥାଟି ତ ସତ ଯେ ଲୋକଟି ମରିଯାଇଛି । ଗଛ ତଳେ ଶୋଇ ରହିଛି ତା'ର ଶବ ।....ଅର୍ଦ୍ଧନଗ୍ନ ! ସେ ମହାସତ୍ୟ....ତା' ଉପରେ ତ ମିଛର ପ୍ରଲେପ ନାହିଁ !

ଆଉ ଜଣେ କହିଲେ – ଏ ଆତ୍ମହତ୍ୟା ନୁହଁ ମ ! ଗଛ ତଳଟାରେ ମରି ପଡ଼ିଲା ବୋଲି କ'ଣ ଆତ୍ମହତ୍ୟା ! ଆତ୍ମହତ୍ୟା ଲାଗି କ'ଣ ଆଉ ଜାଗା ନ ଥିଲା । ଲୋକଟି ବେମାର ଥିଲା । ମୁଁ ଅନେକଥର ଦେଖିଛି ତାକୁ । ଡାକ୍ତରଖାନା ଆସେ—ବୁଲେ ବି ଏଣେତେଣେ ଭିକ ମାଗି । ଏ ମୃତ୍ୟୁ...ମୃତ୍ୟୁ....ଅପମୃତ୍ୟୁ ନୁହେଁ !

ସେ ସତରେ ମରିଗଲା । ସତରେ ମରିବାକୁ ଚାହୁଁଥିଲା!....ତାର ଭିତରେ ସତରେ ସିକନ୍ଦର ଥିଲା—ନେପୋଲିୟନ ଥିଲା....ବୁଦ୍ଧ....ଯୀଶୁ....ଗାନ୍ଧି ଥିଲେ.... ଥାଇ ପାରନ୍ତି....ସ୍ବତରେ ପଚାର ତାକୁ ...

କିଏ କାହିଁକି ପଚାରିବ !

ଏଇନେ ତାକୁ ପଚାରିବା ସହଜ । ଏଇନେ ତାକୁ ବୁଝେଇଦେବା ସହଜ ଯେ ଏ ମୃତ୍ୟୁ ମୃତ୍ୟୁ ନୁହେଁ । ଜୀର୍ଣ୍ଣ ବସ୍ତ୍ର ପରିତ୍ୟାଗ କରି ନୂତନ ଗ୍ରହଣ କଲାଭଳି ଏହା ଏକ ଆନନ୍ଦଦାୟକ ପ୍ରକ୍ରିୟା । ଏହା ଘଟ ପରିବର୍ତ୍ତନ । ଆତ୍ମାର ସହିତ ମିଳନ ପଥରେ ଏହା ଏକ ଅଗ୍ରଗତି ।....

ଭିଡ଼ ସେମିତି ଅଛି । ସେଇ ଲୋକ ନ ଥାଇ ପାରନ୍ତି । ଜଣେ ଯାଇ ଆଉ ଜଣେ ଆସୁଛି । ଭିଡ଼ ସେମିତି ଅଛି । ମୃତ୍ୟୁ ଜୀବନ ପ୍ରତି ସଚେତନତା ଆଣୁଛି । କୌତୂହଳ ନୁହେଁ । ମଲା ମଣିଷର ମୁହଁ ଜୀଇଁଲା ମଣିଷ ମୁହଁରେ ଅବଜ୍ଞା ନୁହଁ, ଆତଙ୍କ ସୃଷ୍ଟି କରୁଛି ସେଇଥିଲାଗି ହୁଏ ତ ଏ ଅବହେଳାର ବାହାନା....ଏ ଅବଜ୍ଞାର ଅଭିନୟ....ଛଳନା ।

ସେଇ ମୃତ୍ୟୁର ଆତଙ୍କ ବୋଧହୁଏ ଆନନ୍ଦ ଦେଉଛି ଆକାଶରୁ ଖସୁଥିବା ରକ୍ତାକ୍ତ ପକ୍ଷୀ ବନ୍ସୀ କଣ୍ଟାରେ ଛଟପଟ ମାଛକୁ ଦେଖିଲେ....।

ମୁଁ ଚାଲିଆସିଲି । ମୋର କୌଣସି ଆବଶ୍ୟକତା ନ ଥିଲା ସେଇଠି ରହିବାର । ଏ ମୃତ୍ୟୁରେ ଇତିହାସ ଓ ରାଜନୀତିର କୌଣସି ପରିବର୍ତ୍ତନ ହେବନାହିଁ । ନିହାତି ତୁଚ୍ଛ....ନଗଣ୍ୟ....ଅତି ସାଧାରଣ ଏ ମୃତ୍ୟୁ ...ନିରର୍ଥକ !

ଦୁଇଦିନ ପରେ ସତକଥା ବାହାରିଲା ସମ୍ବାଦ ପତ୍ରରେ....ସ୍ୱତନ୍ତ୍ର ପ୍ରତିନିଧି ଲେଖିଥିଲେ....ଅମୁକ ସହରରେ ଅନାହାର ମୃତ୍ୟୁ ...

ସତରେ ସତକଥା ବାହାରିଲା ଶେଷରେ....ଏହା ମୃତ୍ୟୁ... ଆତ୍ମହତ୍ୟା ନୁହଁ.... ମୃତ୍ୟୁ, ଅପମୃତ୍ୟୁ ବୋଧହୁଏ ।

ମୁଁ ଭାବିଲି—ଏହା ଯେ ଜାଣିଲେ ...ସେଇ ମୁଠିଏ ଆଗରୁ ଦେଇଥାନ୍ତେ ଯଦି....!



# ରୋମନ୍ଥନ

ଭୁବନେଶ୍ୱର ବେହେରା

---

ଜୟଦେବ ବାବୁ ବାରନ୍ଦାରେ ପଡ଼ିଥିବା ବେତ ଚୌକିଟିରେ ବସି ରାସ୍ତା ଆଡ଼କୁ ଅନାଇଥିଲେ । ରାସ୍ତାରେ ଲୋକଗହଳି କମିନଥିଲା । ମନେ ହେଉଥିଲା ଯେତେ ଯେମିତି ରାସ୍ତାଟି ନିଦରୁ ଉଠି ଏବେ ବି ଢୁଳାଉଛି ।

ଛୋଟ ଛୁଆ ଦିଓଟି କେଉଁ ଗୋଟାଏ ସ୍କୁଲର ୟୁନିଫର୍ମ ପିନ୍ଧି ଆଲୁମିନିୟମ୍ ବାକ୍ସ ଧରି ଧୀରେ ଧୀରେ ଚାଲୁଥିଲେ । ବଡ଼ଟି ଝିଅ ଆଉ ସାନଟି ପୁଅ—ବୋଧହୁଏ ଯୁଗ୍ମ ଭାଇ ଭଉଣୀ । ଭଉଣୀ ତାର ଫ୍ରକ୍ ପକେଟ୍‌ରୁ କ'ଣ ଗୋଟାଏ ବାହାର କରି ପାଟିରେ ଛଡ଼ାଇ ଖାଇଲା ବେଳକୁ ପୁଅଟି ପାଖକୁ ଯାଇ ଅନାଉଥିଲା—ବୋଧହୁଏ ଚିନାବାଦାମ—ନିଜ ଭାଗ ଆଗ ଖାଇଦେଇ ନାନୀର ଅଂଶରୁ ଭାଗ ମାରିବାର ଫନ୍ଦି ନିଶ୍ଚୟ ।

ସ୍କୁଟର୍‌ଟିଏ । ମହିଳା ଜଣକେ ପଣତ କାନି ଉଡ଼ାଇ ପଛ ସିଟ୍‌ରେ ବସିଥିଲେ ଆଉ ଥରକୁଥର ପଣତ ସଜାଡ଼ୁଥିଲେ । ସ୍କୁଟର୍ ଚଳାଉଥିବା ନିଶୁଆ ଭଦ୍ରଲୋକଟି ବୋଧହୁଏ ତାଙ୍କର ସ୍ୱାମୀ ।

ବ୍ୟାଗ୍ ଧରି ହଲି ହଲି ଯାଉଥିବା ଲୋକଟି ନିଶ୍ଚୟ ଜଣେ ଚପରାସି । ଅନ୍ୟ ଦିଗରୁ ଆସୁଥିବା କେହି ଜଣେ ସାଙ୍ଗକୁ ଭେଟି ମୁହଁକୁ ମୁହଁ ଲଗାଇ ଗପ ଆରମ୍ଭ କରିଦେଇଛି—ବିପରୀତ ଦିଗରୁ ଭେଟାଭେଟି ହୋଇ ନିଶ ଘଷାଘଷି ହେଉଥିବା ଦିଓଟି ପିମ୍ପୁଡ଼ିଙ୍କ ପରି । ଜଣକର ବିଡ଼ି ନିଆଁରୁ ଆଉ ଜଣେ ବୋଧହୁଏ ନିଜ ବିଡ଼ିରେ ନିଆଁ ଲଗାଇନେଲା ।

ବସ୍‌ଟିଏ ବଡ଼ଖୁଣ୍ଟ ପାଖରେ ଅଟକିଗଲା ଆଉ ଛିଡ଼ା ହୋଇଥିବା ଲୋକମାନଙ୍କୁ ଗୋଟା ଗୋଟା ଗିଳିଦେଇ ପୁଣିକୁଆଡ଼େ ଚାଲିଗଲା ପଛ ପାଖରୁ ହାତ ହଲାଇ ହଲାଇ ଦଉଡ଼ୁଥିବା ଭଦ୍ରଲୋକଙ୍କୁ ଉପେକ୍ଷା ନ କରି—ସାଇକେଲ ରିକ୍ସା—ପାଲବଡ଼ା ଲଦା ବଳଦଗାଡ଼ି....

ସମସ୍ତେ ନିଜ କାମରେ ଲାଗି ,ଯାଇଛନ୍ତି, କେବଳ ବସି ରହିଛନ୍ତି ଜୟଦେବ ବାବୁ । ବସି ରହିବାହିଁ ସତେ ଯେମିତି ତାଙ୍କର କାମ । ଅସ୍ୱସ୍ତିର ଗୋଟାଏ ଲମ୍ବା ନିଃଶ୍ୱାସ ନେଇ ଜୟଦେବ ବାବୁ ଭାବନାରେ ବୁଡ଼ିରହିଲେ । ହୁଁ—ତାଙ୍କପାଇଁ ଏବେ ଆଉ ସମୟର ମୂଲ୍ୟ ନାହିଁ—ସମୟ ତାଙ୍କପାଇଁ ଗତିହୀନ, ସ୍ଥିର—ଠିକ୍ ସେଇ ରାସ୍ତାର ବତିଖୁଣ୍ଟ ପରି । ବସ୍‌ରେ ଯେଉଁମାନେ ଛୁଟି ଚାଲିଛନ୍ତି ସେମାନଙ୍କ ଆଖିରେ ସେ ବତିଖୁଣ୍ଟଟି ଅବଶ୍ୟ ବେଶ୍ ଗତିଶୀଳ; କିନ୍ତୁ ଯେଉଁମାନେ ତାଙ୍କପରି ଏମିତି ବସିରହି ସେ ଖୁଣ୍ଟକୁ ଅନାଇଛନ୍ତି, ସମୟ ଠିକ୍ ସେପରି । ଯେଉଁମାନେ ନିଜ ନିଜ କାମରେ ଧାଇଁଛନ୍ତି, ସମୟ ବି ସେମାନଙ୍କ ସଙ୍ଗରେ ଧାଇଁଛି—ହୁଏ ତ ବିପରୀତ ଦିଗରେ । ଆଉ ଯେଉଁମାନଙ୍କର କାମଧନ୍ଦା ନାହିଁ, ସମୟ ସେମାନଙ୍କ ପାଇଁ ଶିକାରକୁ ଛପି ରହିଥିବା ଠିକ୍ ଗୋଟାଏ ଅଜଗର ପରି ସ୍ଥିର । ବେଳକାଳ ଉଣ୍ଡି ଧରିନେଇ ଗିଳିପକାଇବ ଯାହା ।

ପାଖରୁ ଆସୁଥିବା କିଛି ଗୋଟାଏ ଶବ୍ଦ ଜୟଦେବ ବାବୁଙ୍କ ଭାବନାର ଖିଅ ଛିଣ୍ଡାଇଦେଲା । ସେ ଚାରିଆଡ଼କୁ ଚାହିଁଲେ । ଅନତିଦୂରରେ ଶୋଇ ରହିଥିବା ଗାଈଟି ବୋଧହୁଏ ଘର ପଛପାଖରୁ ଆସୁଥିବା ହମ୍ବା ଡାକର ଉତ୍ତର ଦେଉଛି ।

ଗାଈଟି ବେଶ୍ ନିଶ୍ଚିନ୍ତରେ ଶୋଇଥିଲା ଆଉ ପାକୁଳି ମାରୁଥିଲା । ନିମୀଳିତ ଆଖିଦୁଇଟି ବେଳେ ବେଳେ ସାମାନ୍ୟ ଖୋଲି ଯାଉଥିଲା । ମଝିରେ ମଝିରେ କାନ ହଲାଇ ନିଜ ମୁହଁକୁ ନିଜେ ବିଞ୍ଚୁଥିଲା ଆଉ ମୁଣ୍ଡ ହଲାଉଥିଲା—ସତେ ଯେମିତି କାହାର ଏକାନ୍ତ ଅନୁରୋଧ ରକ୍ଷା କରିନପାରି ସେ ନାସ୍ତି ବାଣୀ ଶୁଣାଉଛି ।

ଜୟଦେବ ବାବୁଙ୍କ ଭାବନା ଏଥର ଗାଈ ଆଡ଼କୁ ମୁହାଁଇଲା । ତାଙ୍କର ମନେହେଲା ଗାଈ ଯେମିତି ମନକୁମନ ହସୁଛି । ହୁଏ ତ କଳ୍ପନା କରୁଛି ଯେ କିଛି ଲୁଣ ଓ ଗୁଡ଼ ମିଶା ପେଜ ତୋରାଣି, ସିଝା ବୁଟଡାଲି, ଚିନାବାଦାମ ପିଡ଼ିଆ ଆଉ ଚାରି ଚାରି ଇଞ୍ଚ ଲମ୍ବରେ କଟା ଯାଇଥିବା କଅଁଳିଆ ଦୁବଘାସର ଗୋଟାଏ ଭରପୂର ଡ୍ରମ୍ ତା' ଆଡ଼କୁ ଠେଲିହୋଇ ଆସୁଛି ।

ଘର ପଛରୁ ପୁଣି ସେଇ ହମ୍ବା ଡାକ ।

ଗାଈ କେମିତି ଗଳା ଖଙ୍କାରିବା ଶବ୍ଦ ପରି ଅଧା ଅପନ୍ତରିଆ 'ଏହେଁ' କଲା । ମନେହେଲା ସତେ ଯେମିତି ଉତ୍ତରରେ କହୁଛି—'ଭଲ ହୋଇଛି ! ତୁ ସେଠି ବନ୍ଧାହୋଇ ପଡ଼ିଥା । ଖୋଲିଦେଲେ ତ ଦୁଷ୍ଟାମି କରି ବଗିଚା ସାରା ଡେଇଁ ବୁଲିବୁ !''

ଗାଈ ମୁହଁରେ ପ୍ରସନ୍ନତାର ଛାପ ସ୍ପଷ୍ଟ ।

ଜୟଦେବ ବାବୁ ଏ ଗରୁର ଜୀବନ ସଙ୍ଗରେ ତାଙ୍କର ନିଜ ଜୀବନ ତୁଳନା କଲେ । ସତରେ କି ସୁନ୍ଦର ଚିନ୍ତାଶୂନ୍ୟ ସଂଘର୍ଷ ବିହୀନ ଜୀବନ ଏମାନଙ୍କର ! କିଛି କାମଧନ୍ଦା ନାହିଁ—ଆରାମରେ ଏମିତି ଶୋଇ ଶୋଇ ସମୟ କଟାଉ ଦିଅନ୍ତି, ଆଉ ଆଖି ବୁଜି ପାକୁଳି କରୁଥାଆନ୍ତି । ଦୁଧ କିଛି ଦିଅନ୍ତି, ସତ, ତେବେ ସେଥିପାଇଁ ତ କିଛି କମ୍ ଖାଇବାକୁ ମିଳେନି ! ନିଜ ବାଛୁରୀକୁ ପିଆଇ ସାରିଲା ପରେ ସେ ବଳକା ଦୁଧଗୁଡ଼ାକ ନିଜ ପହ୍ଲାରେ ସଞ୍ଚିରଖି କଣ ବା କରନ୍ତେ ! ଆଉ ଜୟଦେବ ବାବୁ—ତାଙ୍କ ଭାଗ୍ୟରେ ଏମିତି ଆରାମ କାହିଁ ? ସାରା ଜୀବନ ଏକ ନିରବଚ୍ଛିନ୍ନ ଘଣାପେଲାରେ ହିଁ କଟିଗଲା ।

ସେ ହଠାତ୍ ମନେକଲେ ଗାଈ ସଙ୍ଗରେ ନିଜର ତୁଳନା ବୋଧହୁଏ ଠିକ୍ ହେଉନାହିଁ । ଟିକିଏ ଅପ୍ରତିଭ ହେଲେ ମଧ୍ୟ । ତେବେ କଣ ବଳଦ ସଙ୍ଗରେ ସେ ନିଜର ତୁଳନା କରିବେ ? ତାଙ୍କର ମନେ ପଡ଼ିଲା, ପିଲାଦିନେ ସ୍କୁଲର ଗଣିତ ଶିକ୍ଷକ ତାଙ୍କୁ କେମିତି ବେଳେବେଳେ ବଳଦ ବୋଲି ଆକ୍ଷେପ କରୁଥିଲେ, ଆଉ ସେ କୁଣ୍ଡା ଖାଆନ୍ତି ନା ଭାତ ଖାଆନ୍ତି ସେ ସମ୍ବନ୍ଧରେ ସନ୍ଦେହ ପ୍ରକାଶ କରୁଥିଲେ ।

ଜୟଦେବ ବାବୁ ଯେତେ ଭାବିଲେ ସେତିକି ତାଙ୍କର ମନେହେଲା ଯେ, ବଳଦର ଜୀବନ ସଙ୍ଗେ ତାଙ୍କ ଜୀବନର ଯଥେଷ୍ଟ ସାମଞ୍ଜସ୍ୟ ରହିଛି । ବିଚରା ବଳଦ ସକାଳୁ ସନ୍ଧ୍ୟାଯାଏ ଖଟେ; କିନ୍ତୁ ତା ଦୁଃଖ ଗୁହାରି କିଏ ଶୁଣେ ? ଖୁସି ହେଲା ତ ମାଲିକ କେବେ ତା ଦେହରେ ଟିକିଏ ହାତ ବୁଲାଇ ଆଣେ ? ଅଥଚ ତା ମୁହଁ ପାଖରେ ପାଳ ବିଡ଼ାଏ ପକାଇଦିଏ । ନ ହେଲେ ଏଠୁ ସେଠୁ ନିଜେ ଯୋଗାଡ଼ କରି ଖୁଣ୍ଟି ଖାଇବା କଥା; ପଘା ଛିଣ୍ଡାଇ ରାତିରେ କାହା ବାଡ଼ି ବଗିଚାରୁ କଂଚୁଆଳ ଉଠିବ ପୂର୍ବରୁ ଦି'ପୁଳା ମାରିଦେବା କଥା—ଠିକ୍ ତାଙ୍କପରି । ସକାଳୁ ସନ୍ଧ୍ୟାଯାଏ ତାଙ୍କ ଖଟେଣି କି'ଣ ସରକାର କେବେ ବୁଝିଛି ? ଦେହରେ ହାତ ମାରିବା କଥା ତ ଦୂର—ସାବାସି ପଦେ ବି ନାହିଁ । ମାସ ଶେଷକୁ ଯେଉଁ ବେତନ ଟିକିକ ମିଳୁଥିଲା ତାହା ସେହି ପାଳବିଡ଼ାକଠାରୁ କେଉଁ ଗୁଣେ ଅଧିକ ? ସେ ଯଦି ନିଜେ ଏଠୁ ସେଠୁ କିଛି ଖୁଣ୍ଟି ଖାଇନଥାନ୍ତେ, ପଘା ଛିଣ୍ଡାଇ କାହା ବାଡ଼ି ବଗିଚାରୁ....

ତାଙ୍କର ଏମନ୍ତର କଥା କାଳେ କିଏ ଶୁଣି ନେଇଥିବ, ସେ ଆଶଙ୍କାରେ ସନ୍ତ୍ରସ୍ତ ହୋଇ ଜୟଦେବ ବାବୁ ସ୍ୱର ଆଡ଼କୁ ମୁହଁ ବୁଲାଇ ଆଣିଲେ ।

ହିଁ—ବଳଦର ଜୀବନ ପରି ହିଁ ତାଙ୍କର ଜୀବନ ।

ଆଉ ବଳଦ ଯେତେବେଳେ ବୁଢ଼ା ହୋଇଯାଏ । ଚାଷୀ ତଥାପି ତା' ଉପରେ ଜୁଆଳି ଲଦେ । ଲଙ୍ଗଳ ଟାଣି ଚାଲି ନପାରିଲେ ବାଡ଼ାଏ, ଲାଞ୍ଜ ମୋଡ଼େ, ଦେହରେ କେଞ୍ଚେ, ଆଉ ଯାବତୀୟ ନିର୍ଯ୍ୟାତନା ସବୁ ଦେଇ ସାରିଲାପରେ ମଧ୍ୟ ବୁଢ଼ା ବଳଦ ଯେତେବେଳେ ଚାଲି ପାରେନି ତାକୁ ବାଧ୍ୟହୋଇ ଜୁଆଳି ବନ୍ଧନରୁ ମୁକ୍ତିଦିଏ ।

ଏଗଡ଼ି ଚୂଳକାଳି କେମିତି ଗୋଳମାଳିଆ ହୋଇଗଲା । ଜୟଦେବ ବାବୁ ତ ଏବେ ମଧ୍ୟ ଜୁଆଳି ବୋହିବାକୁ ପ୍ରସ୍ତୁତ—ପ୍ରସ୍ତୁତ କହିବା, ଲାଳାୟିତ ଉତ୍କଣ୍ଠିତ ବୋଲି କୁହାଯାଇପାରେ। ଜୁଆଳି ଲଦିଲେ କେଉଁ ଯୁବକ ତାଙ୍କ ସଙ୍ଗରେ କାନ୍ଧ ମିଳାଇ ଟାଣି-ପାରିବ ? ତଥାପି ଅଠାବନ ବର୍ଷ ହୋଇଗଲା ବୋଲି – ବ·ସ୍·ଣଶାୟାର୍ଡ୍ !

ମନ ଭିତରେ କିଏ ଯେ ତ ଯେମିତି ଚିତ୍କାର କରି ଉଠିଲା – ଅନ୍ୟାୟ— ଘୋର ଅନ୍ୟାୟ !

ଜୟଦେବ ବାବୁ ଉତ୍ତେଜିତ ହୋଇପଡ଼ିଲେ । ବାଁଗୋଡ଼ ଆଣ୍ଠୁ ଉପରେ ଡାହାଣ ଗୋଡ଼ ଲଦି ସେ ଯେଉଁ ମୃଦୁ ପଦ ସଞ୍ଚାଳନ କରୁଥିଲେ—ତାହା ବନ୍ଦ ହୋଇଗଲା । ତାଙ୍କର ପ୍ରବଳ ଇଚ୍ଛାହେଲା, ସେ ରାସ୍ତା ଉପରକୁ ଦଉଡ଼ି ଯାଇ ସମସ୍ତଙ୍କ ସାମନାରେ ଏ ଅନ୍ୟାୟର ପ୍ରତିବାଦ କରିବେ । ସମସ୍ତଙ୍କୁ ଗୋଟି ଗୋଟି କରି ପଚାରିବେ—ଚର୍ଚ୍ଚିଲ୍ ଯେତେବେଳେ ପ୍ରବଳ ପ୍ରତାପୀ ହିଟ୍‌ଲର୍ ଓ ମୁସୋଲିନୀ ବିରୁଦ୍ଧରେ ଲଢ଼ୁଥିଲେ, ତାଙ୍କର ବୟସ କେତେଥିଲା ? ପ୍ରଶ୍ନ କରିବେ, ଆର୍ଜେଣ୍ଟିନାକୁ ପେରନ୍ ଯେତେବେଳେ ପୁନର୍ବାର ଶାସକ ହୋଇ ଫେରି ଆସିଲେ ତାଙ୍କର ବୟସ ସେତେବେଳେ କେତେ ? ପଚାରି ବୁଝିବେ ମାର୍ଶାଲ୍ ଟିଟୋଙ୍କ ବୟସ । ଉତ୍ତରବେ କାହିଁକି ? ପୁଣି ସେ ପଚାରିବେ—ମାଓଙ୍କ ମୃତ୍ୟୁ ବେଳକୁ ଚୀନର ଶାସନ କ୍ଷମତା ନିଜ ହାତ ମୁଠାରେ ହିଁ ରହିଛି ବୋଲି ପ୍ରମାଣିତ କରିଥିବା ମର୍ଫିଙ୍କ ବୟସ—‘ଫାସିକ୍‌କାଳୁ ସ୍ୱର୍ଗ ଦେବି’ ବୋଲି ଧମକାଉଥିବା ବଙ୍ଗଳାଦେଶୀ ମୌଲାନା ଭସାନୀଙ୍କ ବୟସ ।

ସେ ଉଠିବାକୁ ଚେଷ୍ଟାକଲେ । ହାତବାଡ଼ି ଦରାଣ୍ଡିଲେ । ବାତଗ୍ରସ୍ତ ରୋଗୀ ଚାଲବୁଲ କରିବାକୁ ସବୁବେଳେ ଚେଷ୍ଟା କରିବା ଉଚିତ ବୋଲି ଜାଣି ଠିଆ ହେଲାପରେ ମଧ୍ୟ ଗୋଟିକଏ ଆଉ ଥରେ ବସି ପଡ଼ିଲେ ।

ତାଙ୍କର ଭାବନା ଏଥର ଭିନ୍ନ ମୋଡ଼ ନେଲା ।

ସତରେ ସେ ବୁଢ଼ା ହୋଇ ଯାଇଛନ୍ତି ।

ତେବେ ସେ କାହିଁକି ବୃକସ୍ଥୁ ଅବ୍ୟାହତିକୁ ମୁକ୍ତିବୋଲି ଗ୍ରହଣ କରି ନେଇ ପାରୁନାହାନ୍ତି—ଦଣ୍ଡବୋଲି ଭାବୁଛନ୍ତି ।

ଜୁଆଳିରୁ ମୁକ୍ତି କ’ଣ ତେବେ ବୁଢ଼ା ବଳଦକୁ ଦଣ୍ଡ ? ଚିନ୍ତା ସବୁ କେମିତି ଗୋଳମାଳିଆ ହୋଇଯାଉଥିବା ପରି ମନେହେଲା । ଆହା—ସତରେ ସେ କରେ । ମୁକ୍ତି ମିଳିଲେ ସେ ଯିବ କେଉଁଠିକି ? ତା’ର ଅଛି ଘର ନା ଦ୍ୱାର—ବାଡ଼ି ନା ବଗିଚା, ବାଣିଜ୍ୟ ବ୍ୟବସାୟ, କମ୍ପାନୀ ସେୟାର, ଘରଭଡ଼ା, ପେନ୍‌ସନ୍ ଟଙ୍କା-ପଇସା ଦିଆନିଆ କାରବାର ! ନା ଅଛି ପୁଅ ବୋହୂ, ଝିଅ ଜୋଇଁ, ନାତି ନାତୁଣୀ—ସାଙ୍ଗ ସାଥୀ କେହି

ଚାଲିବାକୁ ଦେବେନି; ଅନ୍ୟର ଖାଦ୍ୟ ଭିତରେ ଥୋମଣି ଭର୍ତ୍ତିକଲେ ସେ କେବଳ ଠେଲିପେଲି ଓ କେଞ୍ଚା ଖାଇବ ଯାହା । ତଥାପି କ'ଣ ବୁଢ଼ା ବଳଦ ଶୋଚନା କରେ ! ତାଙ୍କ ଭିତରେ ସତେ ଯେମିତ କିଏ ଜଣେ ପ୍ରଶ୍ନ କଲା—'ତମେ ଏଁ ହେଲେ କାହିଁକି ଏମିତ ବ୍ୟସ୍ତ ହେଉଛ ?

ସତେତ ! ଏମିତ ଅଯଥା ବ୍ୟସ୍ତ ନ ହେବା କଥା—ବିରକ୍ତ ନ ହେବା କଥା, ଧୂଃଙ୍ଗ ବି କରିବା କଥା—ସେଇ ବୁଢ଼ା ବଳଦ ପରି ।

କିନ୍ତୁ ଧୂଃଙ୍ଗ ନ କରିବେ କେମିତ ? ନ ଗର୍ଜିବେ ବା କେମିତ ? ବୁଢ଼ା ବଳଦର ତ ସଂସାର ବୋଲି କିଛି ନ ଥିଲା—କାହା ପାଇଁ ସେ କିଛି କରିନି କି କାହାକୁ କିଛି ଦେଇନି । କର୍ମ ଆଦର୍ଶ ପଡ଼ି ରହିବନି ତ ଆଉ କ'ଣ କରିବ ? ସେ କିନ୍ତୁ ଏ ଗୁଡ଼ାଙ୍କ ପାଇଁ କ'ଣ ନ କରିଛନ୍ତି !'

ସେଇ ଅଭିମନ୍ୟୁ—ଲଫଙ୍ଗା ହୋଇ ବୁଲୁଥିଲା । ତା'ର ବିଦ୍ୟାବୁଦ୍ଧି ଯାହା, କେହି ତାକୁ ମେଟ୍ରିକ ସରକାରୀ ପିଅନ ଚାକିରିଟିଏ ବି ଦେଇ ନ ଥାନ୍ତା । କିଏ ତାକୁ ସର୍ଦ୍ଦାର ମିଜିକା ସିଂହର ଟ୍ରକରେ ହେଲ୍‌ପର କରି ଦେଇଥିଲା ? ସେ ଡ୍ରାଇଭିଂ ଶିଖିଗଲା ପରେ ଆଉ ପାନା, ରେଞ୍ଚ, ପେଚକଷ ଟିକିଏ ଧରି ଜାଣିଲାପରେ କିଏ ତାକୁ ପୁରୁଣା ଟ୍ରକଟିଏ କିଣିବା ପାଇଁ ଟଙ୍କା ଦେଇଥିଲା ? ଆଜି ସେ ଗୋଟିଏ ବଡ଼ ଠିକାଦାର ହୋଇଗଲା ବୋଲି ତାକୁ ଆଉ ଚନ୍ଦ୍ର ସୂର୍ଯ୍ୟ ଦେଖାଉନାହାନ୍ତି କି ସେ ଆଉ ସ୍ୱର୍ଗ ମର୍ତ୍ତ୍ୟ ବାରିପାରୁନି ।

କିଏ ତାକୁ ଲାଇସେନ୍ସ କରାଇ ଠିକାଦାର କଲା ? ସେ ସବୁଲ ପାଇଁ କି ଟିପ୍ ସହି ସେ କି ନ କେଇଛନ୍ତି ! ଏବେ ଯେଉଁ ଲାଭ ମାରି ଗୋଟାପରେ ଗୋଟା ଟ୍ରକ୍ କିଣିଗଲା—ବିରାଟ କୋଠା ତୋଳିଲା—ଅନ୍ୟ ରାଉରକେଲା, ତାଳଚେର, ପାରାଦ୍ୱୀପରେ କେଉଁଠି ହୋଟେଲ କଲା ତ କେଉଁଠି ମଦ ଦୋକାନ ଦେଲା—କାହା ଭରସାରେ ! କାହା ସାହାଯ୍ୟରେ ? ଶିଷ୍ଟାଚାର କଲେ ବୋଲି ସେ ତା'ର ଭାଗ୍ୟ ନିୟନ୍ତା ଚିଫ୍ ଇଞ୍ଜିନିୟରଙ୍କୁ ଏମିତ ବେଖାତର୍ କରିବ ? ରାଗରେ ଜୟଦେବ ବାବୁଙ୍କ ବାତଗ୍ରସ୍ତ ଗୋଡ଼ର ଶିରାଗୁଡ଼ିକ ଟାଣି ହୋଇଥାନ୍ତି । କଷ୍ଟରେ ସେ ଛଟପଟ ହେଲେ. ତଥାପି ସେ ଠିକାଦାର ଅଭିମନ୍ୟୁକୁ ଭୁଲି ପାରିଲେନି । ସେ ଦିନର ଅପମାନ ସେ କିମିତ ବା ଭୁଲିବେ ? ଯେଉଁଦିନ ଶିଷ୍ଟାଚାର କଲେ, ତା ପରଦିନର ଘଟଣା । ସେ ଦିନ ବି ଯେମିତ ସେ ଏଇ କେନଚୌକିରେ ବସିଥିଲେ—ଯଦିଓ ସରକାରୀ ଘର ବାରନ୍ଦାରେ । ଦୂରରୁ କାର୍‌ର ହର୍ଣ୍ଣ ଶୁଣି ହିଁ ସେ ବୁଝି ପାରିଥିଲେ ଯେ ଅଭିମନ୍ୟୁ ତାଙ୍କ ଆଡ଼କୁ ଆସୁଛି—ନିଶ୍ଚୟ ଆଶ୍ୱାସନା ନେବାପାଇଁ, ଏମିତ ବଳ ବୟସ ଥାଉଁ ଥାଉଁ ଅବସର ନେବା ବିରୁଦ୍ଧରେ ପ୍ରତିବାଦ କରିବା ପାଇଁ, ତାଙ୍କ ଘରର ଭଲ ମନ୍ଦ ବୁଝିବାପାଇଁ, ଆଉ

ହୁଏଡ ତା' କମ୍ପାନୀର ଉପଦେଷ୍ଟା ହେବା ନିମନ୍ତେ ଅନୁରୋଧ କରିବା ଉଦ୍ଦେଶ୍ୟ ନେଇ । ଆଉ ମାଂଟି ବେତ ଚୌକି ବାରନ୍ଦାରେ କାହିଁକି ଦେଉନା ବୋଲି ବିରକ୍ତ ହୋଇ ସେ ଚପ୍ରାଶିକୁ ଡାକ ଛାଡ଼ିଲେ । ମିନାର ମା' ନକେ ଡେଥାରଟିଏ ନୋଦ୍ଧଆଣି ଦେଖେଇ ଦେଲେ ଯେ ଶଟାପ୍ଟାର କଲାପରେ ଘରେ ଚପ୍ରାଶି ସବୁ ଯାଇଛନ୍ତି । ସ୍ବା' ବୋଲି କଣ ମିନାର ମା' ହାକେ ଚୌକି ବୋହିବେ ! ସେ ଚତ୍କାର କରି ଉଠିଲେ, ସେ ଟ୍ରେକିସ୍ଵାରୁ ମିନା ଅବସର ନେଇଛନ୍ତି, ତାଙ୍କର କ'ଣ କିଛି ଅଭାବ ଅଛି ? ଅଭିମନ୍ୟୁ ପରି ଲାକ୍ଷପତି ଠିକାଦାରମାନେ ଯା'ର ସାମାନ୍ୟ ସଙ୍କେତ ପାଇଲା କ୍ଷଣି ହାତଯୋଡ଼ି ସାମନାରେ ଠିଆ ହୋଇଯିବେ, ତାକୁ ଚପ୍ରାଶି ଅଭାବ ! ଠିକ୍ ସେତିକିବେଳେ ହିଁ ସେ ଟ୍ରେର ଘର ଆଡ଼କୁ ଅନାଇ ଅନାଇ ହର୍ଣ୍ଣ ଦେଇ ଦେଇ ଚାଲିଗଲା । ତା' ପରେ ସେ ଆଜି ପର୍ଯ୍ୟନ୍ତ ଭୁଲରେ ମଧ୍ୟ ତାଙ୍କ ଘରେ ପାଦ ଦେଇନି ।

ଆଉ ସେ ନମକ୍‌ହାରାମ୍ ଗୋବର୍ଦ୍ଧନ ! ଜୟଦେବ ବାବୁ ଶଟାପ୍ଟାର କଲେ ବୋଲି ଯେଉଁ ପ୍ରମୋସନ୍ ସବୁ ହେଲା ସେଥିରେ ହିଁ ଗୋବର୍ଦ୍ଧନ ହେଲା ସୁପରିଣ୍ଟେଣ୍ଡିଂ ଇଞ୍ଜିନିୟର । ଦିନେ ହେଲେ କୃତଜ୍ଞତା ଜଣାଇବାକୁ ଆସିଛି ! ଷ୍ଟେଟମେଣ୍ଟରେ ଦୁଇଭାଗ ବାଲି ଅଛି ତିନିଭାଗ ଗେଡ଼ି ମିଶାଇବା ବଦଳରେ ଠିକାଦାର ଚାରିଭାଗ ବାଲି ଅଛି ଛଅଭାଗ ଗୋଡ଼ିଦେଇ କଂକ୍ରିଟ୍ ଢାଳିଲ ବେଳେ ଏଇ ଗୋବର୍ଦ୍ଧନ କାମ ତଦାରଖ କରୁ ନ ଥିଲା ! ସଡ଼କର ଦୁଇ ଇଞ୍ଚ ମୋଟ୍ ମେଟାଲକୁ ଚାରି ଇଞ୍ଚ୍ ମାପି ଧରି ପଡ଼ି ନ ଥିଲା ? ଆମ୍ବକାଠକୁ ସାଗୁଆନ୍ କାଠ ବୋଲି ଦେଖାଇ ରଙ୍ଗ ବୋଳି ଦେଇ ଏଇ ଗୋବର୍ଦ୍ଧନ ଚେକ୍ ମେଜେରମେଣ୍ଟ୍ କରି ନ ଥିଲା ? ଏଇ ଜୟଦେବ ନଥିଲେ ବେଟା ହେଲେ କେବେଠୁ ଗୋବର ଭି ଗୋବର୍ଦ୍ଧନିଆ ହୋଇ ଯାଉନ୍ତାଣି—ତାର ପୁଣି ଦମାକ୍ ! ସୁପରିଣ୍ଟେଣ୍ଡିଂ ଇଞ୍ଜିନିୟର ହେଲା ବୋଲି କ'ଣ ତା' ଅଣ୍ଟିରେ ମୋଡଆବନ୍ଧ ପଡ଼ିଗଲା । ଶଟାପ୍ଟାର୍ଡ୍ ଚିଫ୍ ଇଞ୍ଜିନିୟରଙ୍କୁ ଚିହ୍ନି ବ...।

—ଆଉ କେତେବେଳେ ଗାଧୋଇବ ?

ପ୍ରଶ୍ନ ଶୁଣି ଜୟଦେବ ବାବୁ ଚମକି ପଡ଼ିଲେ । ମିନା-ମା' କେତେବେଳେ ଘର ଭିତରୁ ବାରନ୍ଦାକୁ ଆସି ସାରିଥିଲେ, ଆଉ କହୁଥିଲେ – ସେଇଠି ବସି ବସି କ'ଣ ସବୁ ଏମିତି ଭାବୁଛ ? ଗାଧୋଇବା ବେଳର କିଛି ଠିକଣା ନଥାଏ ବୋଲି ତମ ଦେହ ଖରାପ ହୁଏ । ଜଳଖିଆ ନଖାଇ ଖାଲି ପେଟରେ ଚା ଖାଇଲେ ପେଟ ଗରମ ହୁଏ; ଆଉ ତହିଁରୁ ବାତ ପ୍ରକୋପ....

ଜୟଦେବ ବାବୁ ଅସନ୍ତୁଷ୍ଟ ହୋଇ କଥାରେ ବାଧାଦେଇ କହିଲେ ( ଆସିଲେ ବଡ଼ ଡାକ୍ତର— ଏମ୍. ଡ଼ି. ଏମ୍., ଆର୍, ସି. ଓ. ଜି. । କହିଲେ କଣ ନା ଚା' ଖାଇଲେ ପେଟ ଗରମ ଆଉ ତହିଁରୁ ବାତର ପ୍ରକୋପ । ମୋ ଦେହ ଭଲ ନ ରହିଲେ

କାହାର କ'ଣ ଲାଗିଯିବ ଯେ ! ତମ ଶିଳ୍ପପତି ପୁଅ ତ ସବୁ ପଇସା ନେଲା—ଏବେ କେବେ ପଚାରୁଛି ବୁଝିଛୁ ବାପା କେମିତି ଅଛନ୍ତି ?'

ଏପରି ବନା ମେଘରେ ବଜ୍ରପାତ ପାଇଁ ମିନମା' ପ୍ରସ୍ତୁତ ନଥିଲେ । ସେ କିଛିକ୍ଷଣ ପାଇଁ ହତବାକ୍ ହୋଇ ଯାଇ କହିଲେ, 'ତମେ ଆଜିକାଲି ଏମିତି ସବୁବେଳେ ରାଗୁଛ କାହିଁକି ? ମୁଁ ତ ତାଙ୍କୁ କିଛି କହିନି । ଏବର ଯୁଗ ତ ଦେଖୁଛ—କେଉଁ ପିଲା ବାପ ମା' ପାଇଁ କ'ଣ କଲେଣି ? ସବୁ ସହିବାକୁ ପଡ଼ିବ—ଅଧୈର୍ଯ୍ୟ ହେବାର କ'ଣ ଅଛି ମୁଁ ତ ଘର ଚଳାଇ ନେଉଛି—ତମକୁ ତ କା ପାଖରେ ହାତ ପତାଇବାକୁ ପଡ଼ୁନି ।

ଜୟଦେବ ବାବୁ ଅତଡ଼ତ ହୋଇଗଲେ । କ'ଣ କରିବେ କିଛି ବୁଝି ପାରିଲେନି । ମିନ ମା'ଙ୍କ ଏଇ ଅବିଚଳିତ ମନୋଭାବ ତାଙ୍କୁ ଚକିତ କରିଦେଲା ।

ଜୟଦେବ ବାବୁ ନିଜ ଭୁଲ ବୋଧହୁଏ ବୁଝି ପାରିଲେ । ବିନା କାରଣରେ ମିନ ମା'ଙ୍କୁ ଆଘାତ ଦେଇ ଥିବାରୁ ଅନୁତାପରେ ସ୍ୱଗତୋକ୍ତି କଲାପରି କହିଲେ – 'ଜୀବନସାରା ତ ଭୁଲ କଲି – ଆଜି କେଉଁ ନୂଆ କଥା ? କାହାପାଇଁ ଏମିତି ଧନ ସଞ୍ଚୟ କରୁଥିଲି... ବୁଢ଼ା ବେଳକୁ କ'ଣ ସେ– ବୁଢ଼ା ବଳଦପରି ସ୍ୱା ତା' ତଙ୍ଗାରେ ଜବରଦସ୍ତି ଯୋମଣି ଭକ୍ତି କରିବାକୁ ଯାଇ ଠେଲାପେଲା ଖାଇବ ?

ଜୟଦେବ ବାବୁ ଫଁ ଫଁ ହେଉଥିଲେ । ମନକୁ ମନ କହୁଥିଲେ – ଭଲ ହେଲା, ସେ ଉଚିତ ଶିକ୍ଷା ପାଇଛନ୍ତି । କାହାପାଇଁ ସେ ଏମିତି ଦଉଡ ଧାପଡ଼ କରି, ଗ୍ରେଶହାର କରି, ଖୋସାମତ କରି, ମନ୍ତ୍ରୀଙ୍କ ପଛରେ ଗୋଡ଼ାଇ, ସେକ୍ରେଟାରୀଙ୍କ ପୁଅକୁ କାଢ଼ି ଥିଲେ, ଆଉ ଧନ ସଞ୍ଚୟ କରୁଥିଲେ ? ବେଶ୍ ହୋଇଛି ।

ମିନ ମା' କଅଁଳ ଗଳାରେ କହିଲେ –'ମୋ ରାଣ, ଚାଲ— ଗାଧୋଇପଡ଼ି କିଛି ଜଳଖିଆ ଖାଇନେବ । ତମ ପାଇଁ ଆଜି ତମର ସବୁଠାରୁ ପ୍ରିୟ ଦୋଶା ଆଉ ନଡ଼ିଆ ଚଟଣି କରି ଦେଇଛି ।'

ଜୟଦେବ ବାବୁ ମିନ ମା' ମୁହଁକୁ ଚାହିଁଲେ । କେଜାଣି କାହିଁକି ହଠାତ୍ ତାଙ୍କ ମା'ଙ୍କୁ ମନେ ପଡ଼ିଲା । ପିଲାଦିନେ ଅଝଟ ହୋଇ ନ ଗାଧୋଇଲେ, ରୁଷିଲେ, ଅଭିମାନ କରି ନ ଖାଇଲେ, ତାଙ୍କ ମା' ବି ଏମିତି ଗେଲକରି କଥା କହୁଥିଲେ—ଭଲ ଭଲ ଜିନିଷ ଖାଇବାକୁ ଯାଚୁଥିଲେ, ମନ ଭୁଲାଇବାକୁ ଚେଷ୍ଟା କରୁଥିଲେ ।

ମିନ ମା' ବଢ଼ାଇଥିବା ହାତ ଧରି ଜୟଦେବ ବାବୁ ଠିଆହେଲେ । ଘର ଭିତରକୁ ଯିବା ପୂର୍ବରୁ ଗାନ୍ଧି ଆଡ଼ିକି ଆଉ ଥରେ ତାଙ୍କର ନଜର ପଡ଼ିଗଲା—ଗାନ୍ଧି ମୁହଁରେ ସେଇ ପ୍ରସନ୍ନତାର ରୂପ । ତାଙ୍କର ମନେହେଲା ଏ ପ୍ରଶାନ୍ତି ସେ ଆଉ କେଉଁଠି ଦେଖିଛନ୍ତି । ମିନ ମା'ଙ୍କ ମୁହଁରେ ? ନିଜ ମା'ଙ୍କ ମୁହଁରେ ?



# ବିଦୀର୍ଣ୍ଣ

**ବୀଣାପାଣୀ ମହାନ୍ତି**

---

ମଞ୍ଜରୀ ଦେବୀ ତରତର ହୋଇ ଘରୁ ବାହାରିଗଲେ । ପୁଅ ଝିଅ ସମସ୍ତେ ସ୍କୁଲ କଲେଜରୁ ଫେରିଲେଣି । ଘରେ ଜନଗଣ କୋଳାହଳ ବଢ଼ିଉଠୁଛି । ଯୌବନ ଓ ରାଜନୀତି ଉଭୟ ବିଷୟରେ ଏକ ସମୟରେ ସଚେତନ ହୋଇଉଠୁଥିବା ପୁଅ ଝିଅଙ୍କ ଆଗରେ ସଭା ସମିତିକୁ ବାହାରିଲାବେଳେ ମଞ୍ଜରୀ ଦେବୀ ନିଜ ଅଜାଣତରେ କିପରି ସଙ୍କୋଚ ଅନୁଭବ କରନ୍ତି । ଯେତେ ଯେଉଁଠି ଯୁକ୍ତିତର୍କ କଲେ ବି ନିଜ ପିଲାଙ୍କ ସଙ୍ଗରେ ସେ ପାରନ୍ତିନାହିଁ । ମନେ ମନେ ସେଥିପାଇଁ ରାଗ ହେଉଛି, ବାହାରେ ବନ୍ଧୁ ମେଳରେ ଗର୍ବ ହେଉଛି; କିନ୍ତୁ କଥା ହେଲା, ତାଙ୍କର ମନରାଗ, ବାହାରର ଗର୍ବ ସନ୍ତତି ନିକଟରେ କେବେହେଲେ ପ୍ରକାଶ୍ କରେ ନାହିଁ — ମିଳିତ ହୋଇ ତାଙ୍କୁ ଉତ୍‌ଫୁଲ୍ଲ କରିବାର ପ୍ରଶ୍ନ ଉଠେନା ।

ଗାଡ଼ିରେ ବସି ମଞ୍ଜରୀ ଦେବୀ ହ୍ୟାଣ୍ଡବ୍ୟାଗ୍‌ରେ ଥିବା ଛୋଟ ଦର୍ପଣରେ ମୁହଁଟା ଦେଖିନେଲେ । ଢାଲେ ପାଉଡର ଲାଗିଥିବ । ଅକ୍ଷୟଟା ମୁରୁକି ମୁରୁକି ହସି କହୁଥିଲା — ସମାଜବାଦ କଲାବେଳେ ନିଜକୁ ସମାଜବାଦୀ ବେଶ ପୋଷାକରେ ସଜ୍ଜିତ କରିବାକୁ ହେବ । ଅର୍ଥାତ୍ ସାଦାସିଧା । ଝିଅ ସୁଚନ୍ଦା କିନ୍ତୁ ରାଜି ହୋଇ ନଥିଲା । ବରଂ ସେ ହସି ଦେଇ କହିଥିଲା — ନା ମା', ବରଂ ଓଠରେ ନ୍ୟୁଟ୍ରାଲ କଲର୍‌ର ଲିପଷ୍ଟିକ୍ ଟିକେ ଲଗାଇଲେ ଭାଷଣ ଦେବା ସମୟରେ ଇମ୍‌ପ୍ରେସିଭ୍ ଲାଗିବ । ମଞ୍ଜରୀ ଦେବୀ ବିରକ୍ତ ହେଲେ ଅକ୍ଷୟ କହେ — ମା' ତମକୁ ସମସ୍ତଙ୍କ ମତ ନେଇ ଚଳିବାକୁ ହେବ । ସମାଜ-ବାଦଟା ଘରୁ ଆରମ୍ଭ ନ ହେଲେ ବାହାରେ ଚଳାଇବା ମୁସ୍କିଲ ।

ସମାଜବାଦ ! ସମାଜବାଦ !! ବିରକ୍ତ ଲାଗିଲାଣି । କଥା କଥାକେ ସମସ୍ତେ ସେଇ କଥା କହୁଛନ୍ତି । ସତେ ଯେମିତି ମଞ୍ଜରୀ ଦେବୀଙ୍କ ବ୍ୟତୀତ ଏ କଥା ଶୁଣିବାକୁ କେହି ଏ ଦେଶରେ ନାହାନ୍ତି ।

ଘଡ଼ିକି ଦେଖି ବିରକ୍ତ ହୋଇ ଉଠିଲେ ମଞ୍ଜରୀ ଦେବୀ, ଆଉ ଡ୍ରାଇଭରକୁ ହାର୍ଣ୍ଣି ଦେଇ କହିଲେ — "ଚଳାଉଛ ନା କ'ଣ ରଖାଳ ? ତୁମେ ପାଞ୍ଚଟାରେ ନିକମା,

ତମର ମୋଟେ ସମସ୍ତ ଜ୍ଞାନ ହେଲାନି । ତେଣେ ସେ ମୁଁ ଯାଇ ନ ପହଞ୍ଚିଲେ କିଛି କାମ ହୋଇ ପାରିବନି ।''

ରାଖାଲ ଯୁବକ ଡ୍ରାଇଭର । ସମ୍ବାଦ ସମ୍ପର୍କରେ ତା'ର କିଛି ମନ୍ଦ ଧାରଣା ନାହିଁ ତେବେ ଏ ଯୁଗରେ ସେ ପଦେକଥା ମନ୍ଦ ହିବ ବନା ଦୋଷରେ, ଏଇଟା ଅନ୍ତତଃ ଅସହ୍ୟ । ସେ ବେଶ୍ କ୍ଷିପ୍ର ସ୍ୱରରେ ଉତ୍ତର ଦେଲା –

''ଚାଲିଛି ତ ଆଜ୍ଞା ! ଆଉ କ'ଣ ଲୋକ ଗୁଡ଼ାକ ଉପରେ ମଡ଼େଇ ନେବ ?''

''ବେଶ୍ କଥା କହୁ ଶିଖିଛ ଦେଖୁଛି ।'' ହଠାତ୍ କର୍ମି ଉଠି ମନ୍ତ୍ରୀ ଦେବୀ କହିଲେ ।

ରାଖାଲ ଉତ୍ତର ଦେଲାନି । ବର୍ତ୍ତମାନ ତାର କୌଣସି କଥା ଆଉ ଶୁଣାଯିବନି । ସେ ମନକୁ ମନ ଧୂଇଟା ଓଠ ଉପରକୁ ଉଠାଇ ଚୁପ୍ ରହିଲା ।

ମନ୍ତ୍ରୀ ଦେବୀ ହାତ ଘଣ୍ଟାକୁ ଚାହିଁ ବ୍ୟସ୍ତ ହେଲେ । କାରଣ ମିଟିଂଟାର ସଫଳତା ତାଙ୍କ ଉପସ୍ଥିତି ଓ ଭାଷଣ ଉପରେ ଅନେକଟା ନିର୍ଭର କରୁଛି । ସେ ଆଉ ଥରେ ପାଉଡ଼ର ପଫ୍‌ଟା ଗାଲ ଉପରେ ବୁଲାଇ ଆଣିଲେ ଏବଂ ମନେ ମନେ ଆଉଡ଼ାଇ ନେଲେ ମୁଖସ୍ଥ କରିଥିବା କେତେ ପଦ ସାମାଜବାଦର ସ୍ଲୋଗାନ୍ ।

ସଭା ସ୍ଥାନରେ ଲୋକାରଣ୍ୟ । ଏକଦମ୍ ଧାଇଁଲା ପରି ଆସୁଛନ୍ତି ହରିପଦ ବାବୁ । ଆଜି ତାଙ୍କର ବି କିଛି କହିବାର ଥିଲା ।

ମନ୍ତ୍ରୀ ଦେବୀ ହରିପଦ ବାବୁଙ୍କୁ ପଚାରିଲେ—''ଏତେ ତରତର ହୋଇ ପଳାଉଛନ୍ତି କାହିଁକି ? କ'ଣ ହେଲା ?''

ହରିପଦ ବାବୁ ତାଙ୍କ ଗହିବା କପାଳରୁ ଝାଳ ପୋଛୁ ପୋଛୁ ଉତ୍ତର ଦେଲେ—

''ରାମ, ରାମ୍ ! ଆଉ କୁହନ୍ତୁନା । ଦେଶଟା ଉଚ୍ଛନ୍ନ ହୋଇଗଲା । ମୁଁ କହୁଛି—ତାହିଁକି ଆଲୋଚନା କରିବ ତ ବାବୁ ତମେ ତମ ଭିତରେ କର । ଟେବୁଲ୍‌ଟେ ପକେଇ ପାଞ୍ଚଦଶ ବସିଯିବ—ଯିଏ ଯାହା କହିବ ତାକୁ ନୋଟ୍ କରି ନେଇ ଖବର କାଗଜରେ ଛାପିଦିଅ, ତେଣିକି ତମ ପଛେ ହଜାରେ ପାଞ୍ଚ ଲୋକଙ୍କର ନାଁ ଦେଇପାର, ନାଁ.... ।''

ମନ୍ତ୍ରୀ ଦେବୀ ପୁଣି ବ୍ୟସ୍ତ ହେଲା ପରି ପଚାରିଲେ—''କ'ଣ ହେଲା ଆଜ୍ଞା ? ଆଲୋଚକ କେହି ଆସି ନାହାନ୍ତି ? ମୋର ଟିକେ ଡେରି ହୋଇଗଲା....ପୂଜାଘଣ୍ଟା ନାହିଁ, ପିଲାଙ୍କ ପାଇଁ ଟିଫିନ୍ ସଜାଡ଼ି ଆସୁ ଆସୁ .... !'' ମନ୍ତ୍ରୀ ଦେବୀ ସତେ ବା ନିଜ ଭିତରେ ନିଜ ଅକ୍ଷମତାକୁ କ୍ଷମା କରି ପାରୁନଥିଲେ ।

ହରିପଦ ବାବୁ ଧୂଇପଟରେ ଯିବା ଆସିବା ଜନତାକୁ ଲକ୍ଷ୍ୟ କରି ଚୁପ୍ ଚୁପ୍ କହିଲେ—''ଆସିବେନି କାହିଁକି ? ପରି ପରି ହେଉଛନ୍ତି ସବୁ ! କୋଉଠୁ ଗୁଡ଼ାଏ

ଛତରୁ ଟୋକା ଆସିଛନ୍ତି । ତାଙ୍କୁ ପଚାରେ, ହ'ପଦ କହିପାରିବେନି, ଆଉ ଯିଏ କହିଲା, ତାକୁ ସେ ବୁଝାଇ ଦେବେନି । ପ୍ରଶ୍ନ ଉପରେ ପ୍ରଶ୍ନ । ଗୃଜନାରେ କ'ଣ ହେଲା, ଚୁଣ୍ଡିଆରେ କଣ ହେଲା, ଖରଡର ଗୁଣ୍ଡାମାନେ କ'ଣ···ଇତ୍ୟାଦି....କେତେ କଥା । ତମେତ ପଦେ କହି ନଥିବ, ପାଞ୍ଚଟା ପ୍ରଶ୍ନ ହେବଣି, ଏଥିରେ କ'ଣ କହିବ କହୁନାହାନ୍ତି । ମୁଁ ଶେଷରେ ସଭା ଛାଡ଼ି ଚାଲି ଆସିଲି । ଆପଣ ଯାଆନ୍ତୁ; ଦେଖିବେ ଯଦି....।"

ମଞ୍ଜୁଷା ଦେବୀ ଅନ୍ୟମନସ୍କ ଭାବରେ ମିଟିଂ ହଲ୍‌ର ଚତୁର୍ଦ୍ଦିଗରେ ବସିଥିବା ଜନତାଙ୍କୁ ଲକ୍ଷ୍ୟ କରୁଥିଲେ, ଆଉ ହରିପଦ ବାବୁଙ୍କ କଥାରେ କିପରି ନିରୁତ୍ସାହ ହୋଇ ପଡ଼ିଥିଲେ ।

ମାତ୍ର ମିଟିଂକୁ ନ ଯାଇ ଫେରିଯିବେ କେମିତି ? କିନ୍ତୁ ପ୍ରଶ୍ନଗୁଡ଼ିକର ଉତ୍ତର ଯଥାଯଥ ନ ଦେଲେ ? କଥାଟା ଚାରିଆଡ଼େ ରାଷ୍ଟ୍ର ହୋଇଯିବ । ଅଜୟ, ଅକ୍ଷୟ, ସ୍ୱପ୍ନା, ସୁଚନ୍ଦ୍ରା ଆଉ ତାରି ବାପାଙ୍କଠାରୁ ଆରମ୍ଭ କରି ସୁଖାଲ ଏବଂ ସହରର ସବୁ ଲୋକଙ୍କ ଆଖିର ତାଚ୍ଛଲ୍ୟକୁ ସହ୍ୟ କରି ପାରିବେତ ? ତା' ଅପେକ୍ଷା ବରଂ···।"

ମଞ୍ଜୁଷା ଦେବୀଙ୍କ ଚିନ୍ତା ଅସମାପ୍ତ ରହିଲା । ମାଇକ୍‌ରେ ଗୋଟାଏ ବୃଦ୍ଧାଙ୍କ କଣ୍ଠସ୍ୱର ଭାସି ଆସିଲା···ଆପଣମାନେ ଏଠାରୁ ସଭା ଉଠେଇ ନେଇ ଶ୍ମଶାନକୁ ଚାଲି-ଯାଆନ୍ତୁ ନଚେ ନଚେ ଝାମ୍ପା ଆମେମାନେ ଆପଣମାନଙ୍କୁ ନେଇଯିବୁ ଶୀଘ୍ର, ଯାହା ଗୋଟାଏ ବନ୍ଦୋବସ୍ତ ଶୀଘ୍ର କରନ୍ତୁ । ଜାତୀୟ ସମ୍ପତ୍ତିର ଏପରି ବିନଷ୍ଟ ଆମେ ଆଉ ବରଦାସ୍ତ କରିପାରିବୁନି ।

ମଞ୍ଜୁଷା ଦେବୀ ଆଉ ହରିପଦ ବାବୁ ଏକ ସଙ୍ଗରେ ଚମକି ଉଠିଲେ ବି ଏକ ସମୟରେ ଓଠରେ ହସ ବିନିମୟ କଲେ । ମଞ୍ଜୁଷା ଦେବୀ କହିଲେ —

"କେତେ ଏମିତି ଫୁଟକା ଦେଖିଛୁ । ବୁଝିଲେ, ଏ ପାଖରେ ଟିଅର୍ ଗ୍ୟାସ୍, ସେ ପାଖରେ ହାତ ବୋମା, ମଝିରେ ବ୍ରିଟିଶ୍ ପୁଲିଶ୍‌ର ଗୁଳି....ବୁଝିଲେ....ଜୀବନକୁ ଭୟ ଥିଲେ ଏ ଟୋକାଙ୍କ ପରି ଆମେ ଦେଶଟାକୁ ବ୍ରିଟିଶ୍ ସରକାର ହାତରେ ଟେକି ଦେଇ ନିଶ୍ଚିନ୍ତ ରହିଥାନ୍ତୁ....! ଓଃ !"

ମଞ୍ଜୁଷା ଦେବୀ ହଠାତ୍ କଥାର ପୂର୍ଣ୍ଣଚ୍ଛେଦ ପକାଇ କହିଲେ, "ଶୁଣନ୍ତୁ ! ଏଠି ଯା ଘଟଣା ଦେଖୁଛି, ସେଠାରେ ନିଜର ଇଜ୍ଜତ୍ ରଖିବାଟା ବଡ଼ କଥା । ଆଉ ଏଇ ପରିସ୍ଥିତିରେ କାହାକୁ କ'ଣ କହିବ ? କାହିଁକି ବା କାହିଁକି ? ମୁଁ ଚାଲିଲି....ଆପଣ ଯିବେ ଯଦି ଆସନ୍ତୁ, ଡ୍ରପ୍ କରିଦେବି ।"

କିଛି ସମୟ ଅପେକ୍ଷା କରିବାପରେ ମନ୍ତ୍ରୀ ଦେବୀ କହିଲେ, "ଶୁଣିଲି, ଜଣେ ଗୋଟାଏ ଦଳ ଏମାନଙ୍କ ପଛରେ କାମ କରୁଛି । ନଚେତ୍ ଯେ କୌଣସି ଜାଗାରେ ମିଟିଙ୍ଗ୍ ହେଉଛି କି ଆଲୋଚନା ହେଉଛି, ଏମାନେ ଗଣ୍ଡଗୋଳ କରୁଛନ୍ତି କେମିତି ଚଳିବାକୁ ହେବ ? ଆପଣଙ୍କର ଧାରଣା କଣ ?"

ହରପଦ ବାବୁ ଯେପରି ସମସ୍ତ ଧ୍ୟାନ କରୁଥିଲେ କ'ଣ ଗୋଟାଏ ଖୋଜିଲା ଭଙ୍ଗିରେ ଖୁନ୍ଦୁଥିଲେ ବ୍ୟସ୍ତ ହେଲା ପରି । ମନ୍ତ୍ରୀ ଦେବୀଙ୍କ କଥା ନ ଶୁଣି ସେ କହିଲେ —

" ଏଇଠି ଗାଡ଼ିଟା ଟିକେ ରୋକନ୍ତୁ, ଅଜ୍ଞା ! ସିମେଣ୍ଟ ଫେକ୍ଟରୀଟା ବୁଲିଯାଏ....

ମନ୍ତ୍ରୀ ଦେବୀ ବିସ୍ମିତ ଭଙ୍ଗୀରେ କହିଲେ -

କ'ଣ ଆପଣଙ୍କର ନଜର ! କେବେ ତ ଶୁଣିନ.... !"

ହରପଦ ବାବୁ ପୁଣି ଜଣେ ପୋଛି କହିଲେ —

'ଏକଥା କି କଥା ? କଳ କାରଖାନା ହୋଇଆସୁ କହନ୍ତି···ଗୋଟାଏ ଜାଗାରୁ ଆଣି ଅନ୍ୟ ଗୋଟାଏ ଜାଗାରେ ବସେଇବା କଥା । ଦ'ପଇସା ଆଣି ଗୁଜୁରାଣ ମେଣ୍ଟାଇବା ପାଇଁ···"

"ସେଦିନ ଆପଣଙ୍କ ଲୁଗା, ରେଡ଼ିଓ ଦୋକାନ, ଆଉ ଗାଁରେ କୋ ଅପରେଟିଭ୍ ଫାର୍ମକଥା....।"

"ସେ ସବୁ ଛାଡନ୍ତୁ ଆଜ୍ଞା, ମୋର ସେଥିରେ ଲାଭ କ'ଣ ? ଆପଣ ତ ଜାଣନ୍ତି ....ହେଲେ କ୍ୟସ୍ତ ସ୍ୱାର୍ଥ ଦଳ ମୋ ପିଛା ଛାଡ଼ୁ ନାହାନ୍ତି ।

ମିଟିଙ୍ଗ୍‌ରେ ଅଜି ସେ ଟୋଗୁଡ଼ାକ ଏତେ ଲୋକଙ୍କ ଆଗରେ....ଛି....ଛି... ! ମୁଁ ଭଲା ମୋ ସ୍ୱାର୍ଥ ପାଇଁ ଏଗୁଡ଼ା କରିଥାନ୍ତି !"

ମନ୍ତ୍ରୀ ଦେବୀ ଫାଟକ ଖୋଲି ସମସ୍ତ କଡ଼କୁ ଆସି ହରପଦ ବାବୁଙ୍କ ଗଖାଲି ନ ଶୁଣିଲା ପରି କହିଲେ — "ମୋର ଲାଇସେନ୍‌ସଟା ରିନିଉ କରିବା କଥା । ହଁ ଶୁଣନ୍ତୁ, ମୁଁ ମୋଟେ ଚାହେଁ ନି ମୋ ନାଁରେ କୌଣସି କାରବାର ଡାଇରେକ୍ଟଲି ହଉ ବୋଲି । ମିଃ ହାଜରା ଓ ସିଂହ.... ।

ହରପଦ ବାବୁ ହସି ହସି କହିଲେ —

ଆପଣ ଏମିତି ଡରୁଛନ୍ତି କାହିଁକି ? ଏମିତି ହେଲେ ବଜନେସ୍ ଡିଲ୍ କରିବା ମୁସ୍କିଲ । ଦଲାଲ୍‌ଗୁଡ଼ାଙ୍କ କଥା କହୁଛନ୍ତି.... ?"

"ନା ! ବଡ଼ ଭୟ ଲାଗୁଛି । କେହି ଜାଣନ୍ତିନି···ଅଜିକାଲି ଦୁନିଆର ଗତିମତି ଦେଖି.... । ସେମାନଙ୍କୁ ମୋଟା ଟଙ୍କା ମୁଁ ଗୁଣିବା ଦିଏ, ମୋଠୁ ଅଧିକା କିଏ ଦେଇ ପାରିବ ? ଅଥଚ ମୋର ଅନୁଷ୍ଠାନ ପଛୁ ସବୁବେଳେ ଲଗିଛନ୍ତି.... ।"

ହରପଦ ବାବୁ କହିଲେ—"ଆପଣଙ୍କର ଏତେ ଭସ୍ମ ପାଇବାର କାରଣଟା ମୁଁ ବୁଝୁନ । ଆପଣଙ୍କ ଭଳି ମୁଁ ପ୍ରତିଷ୍ଠିତ ହୋଇଥିଲେ କ'ଣ କରି ପାରନ୍ତିଣି । ଆପଣଙ୍କର ଯେଉଁ ଟ୍ୟାଲେଣ୍ଟ ରହିଛି !"

ମନ୍ତ୍ରୀଶ୍ରୀ ଦେବୀ ନିଃଶ୍ୱାସଟାଏ ଗ୍ରହି କହିଲେ—

"ଗ୍ରହଡନ୍ତୁ । ଭାଗ୍ୟ । ହେଲେ ଓ୍ୱାଇନ୍ ସପ୍‌ରେ ମୋ ସେୟାରଟା ଅନ୍ୟ ନାଁରେ କରିଦେଲେ ଭଲ ହୁଅନ୍ତା .... ।"

"ନାହିଁ, ନାହିଁ । ସେ ସେ କଥା କହନ୍ତୁନ .... କେବଳ ଆପଣ ଥିବାରୁ ସିନା .... !"

ମନ୍ତ୍ରୀଶ୍ରୀ ଦେବୀ ଆଉ କଥା ନ ବଢ଼ାଇ ଅଗତ୍ୟା ଆସି କାର୍‌ରେ ବସିଲେ ଏବଂ କେଜାଣି କାହିଁକି ହରପଦ ବାବୁଙ୍କ ଲମ୍ବା ଚଉଡ଼ା ଦୋକାନ ଉପରେ ଆଖି ପକାଇ ଦେଇ ଗୋଟାଏ ବ୍ୟଥା ଅନୁଭବ କଲେ ।

ମିଟିଙ୍ଗ୍‌ଟା ଏମିତ ନଷ୍ଟ ହୋଇଗଲା ଆଉ ତା ସହିତ ସନ୍ଧ୍ୟାଟା ବି ।

ଘର ଭିତରକୁ ପଶିଲେ ମନ୍ତ୍ରୀଶ୍ରୀ ଦେବୀ । କପାଳ ଗୋଟାଏ ଥମ୍‌ଥମ୍ ଲାଗୁଛି । ମାତ୍ର ···।

ଉପର ମହଲରେ ଅଜୟର ପଢ଼ାଘରେ ଲାଇଟ୍ ଜଳୁଛି । ଟୁପ୍ ଟାପ୍ ଶବ୍ଦ ମଧ୍ୟ ।

ମନ୍ତ୍ରୀଶ୍ରୀ ଦେବୀ ରୁମ୍ ଭିତରକୁ ଯାଉ ଯାଉ ଅକ୍ଷୟର କ୍ଷିପ୍ର ସ୍ୱରରେ ଅଟକି ଗଲେ....

"ତୁମେ ଭାଇ, ମାଆଙ୍କୁ ସଫା କହିଦିଅ । ଅନ୍ତତଃ ଉପାସରେ ମରିଯିବା ଭଲ । ଏଇ ଲଜ୍ଜା ଠାରୁ ।"

ଅଜୟ ଉତ୍ତର ଦେଲା—"କାହିଁକି, ତୁମେ ସମସ୍ତେ ମିଛି ଭୁଲ, ମୁଁ ଏକା କହିଲେ ସେ ହସି ଉଡ଼େଇ ଦେବେ—ଯେମିତ ସମଗ୍ର ପୃଥିବୀଟାକୁ ସେ ହାଲୁକା କରି ଫିଙ୍ଗି ଦିଅନ୍ତି···।"

ସୁଚନ୍ଦ୍ରା କହିଲା—"ମୋର ପଚ୍ଚାରିବାକୁ ଆପତ୍ତି ନାହିଁ । ମାତ୍ର ମୁଁ ସିଓର୍ ହେବାକୁ ଚାହେଁ । ଫରେନ୍ ଲିକର୍ ସ୍ଟୋରରେ ବିକୁଥିବା ଏବଂ ଲୁଗା ଦୋକାନର ସେଲ୍‌ସଟ୍ୟାକ୍‌ସ ଫାଙ୍କି ଥିବା, ଏଇଟା କଥା ମୁଁ ବିଶ୍ୱାସ କରେନ ।"

"କାହିଁକି ଅପା ବିଶ୍ୱାସ କରୁନ୍ତୁ ? ମା'ର ଡାଏରୀ ଖାତାରେ ସବୁ ଡିଟେଲ୍ ଲେଖା ହୋଇଛି, ଆଉ ତୁ ତ ରୋଜ୍ ମା'ର ଡାଏରୀ ପଢ଼୍···ତେତେ ଦେଖି ମୋର କି ଇଚ୍ଛା ହୁଏ .... ।"

ସୁଚନ୍ଦ୍ରା ଗର୍ଜି ଉଠିଲା—

"ଚୁପ୍ କର । ବାଜେ କଥା କହନା । ମା'ଆଙ୍କୁ ମିଛା ତମେ ଦୋଷ ଦଉଛ.... ହେଲେ ତମର ଏତେ ଲକ୍ସୁରୀ, ଏତେ ଫରମାସୀ ବାପାଙ୍କ କେତେଟା ଟଙ୍କାରେ....।"

ତାଚ୍ଛଲ୍ୟରେ ଅକ୍ଷୟ ପାଟି କରି ଉଠିଲା—"ଲକ୍ସୁରୀ ! ଲଜ୍ଜା ନାହିଁ । କିଏ କହୁଛି ଆମକୁ ଗାଡ଼ି, ଘୋଡ଼ା, କୋଠା, ଡ଼ିନାର୍ ପାର୍ଟି, ପିକ୍‌ନିକ୍‌ରେ ଭସେଇ ଦେଇ ଆମ ମୁହଁରେ ଚୂନକାଲି ଦେବାକୁ ? ଜାଣୁ, ପାଞ୍ଚଜଣ ଲୋକଙ୍କ ଆଗରେ ମୁହଁ ଦେଖାଇବା ସମ୍ଭବ ନୁହେଁ....ତା' ଅପେକ୍ଷା ରାସ୍ତାକଡ଼ରେ ପଡ଼ି ମରିଯିବା ଭଲ ।"

ଅଜୟ କହିଲା—

"ଊ ଅପଦାର୍ଥ । ଆଜି ଅନ୍ତତଃ ତାଙ୍କୁ ମିଟିଂ ଗ୍ରୁଡ଼ିବା ଉଚିତ ନ ଥିଲା । ଆଉ ଆଇ ଓ୍ୱାଣ୍ଡର୍....ସେ ବୁଟ୍ଟୁ ନାହାନ୍ତି, ଭାଷଣ ଦେଇ ଲୋକଙ୍କୁ ଆଉ ଶାନ୍ତ କରିପାରି ପାରିବେନି । ତା'ପର, ସେ ଜାଣନ୍ତି କଣ ? ସମାଜବାଦ୍ ବିଦ୍ୟା କିଛି ହେଲେ ମଗଜରେ ନାହିଁ । କେତେଟା ମୂଖସ୍ଥକରା ଶବ୍ଦ.... ।

ମଞ୍ଜରୀ ଦେବୀଙ୍କ ପାଦ ଟଳୁ ଥିଲା । ଯେପରି ଭୂମିକମ୍ପ ହେଉଉଛି । ସେ ଘର ଭିତରକୁ ଯିବେ କି ସେଇଠାରେ ବସି ପଡ଼ିବେ କିଛି ସ୍ଥିର କରି ପାରୁ ନ ଥିଲେ । କାରଣ ତାଙ୍କ ଡ଼ାଏରୀରେ କେବଳ ଲୁଗା, ମଦ, ଆଉ ଟିକସ୍ ଫାର୍ମ୍ମର ହିସାବ ନାହିଁ .... ଅଛି କକ୍‌ଟେଲ୍ ପାର୍ଟିର ଇତିହାସ....ମି. ସିଂହ, ହାଜରା, ଦାସ···ଆହୁରି ଅନେକ ଅନେକ .... ଚଣ୍ଡୀଗଡ଼ର ମି. ଲୁକ୍ ସହ ରାତ୍ରୀ ଯାପନ, ଗାଡ଼ି କିଣାର ଇତିହାସ ଆଉ ନିକଟ ଭବିଷ୍ୟତରେ ଫରେନ୍ ଯିବାର ଯୋଜନା ତଥା....ଅସୁମାରୀ ସଙ୍କେତ ଆଉ ଭବିଷ୍ୟତର ରଙ୍ଗୀନ୍ କଳ୍ପନା.... ।

ସୁଚନ୍ଦ୍ରାର କେଉଁ ଏକ କଥାରେ ଜବାବ ଦେବାକୁ ଯାଇ ଅଜୟ ଗର୍ଜନ କରି ଉଠିଲା—

"ପୃଥିବୀ ଫାଟି ତାର ମନକୁ ବସୁନ୍ଧରା ଆସିଲା ପର୍ଯ୍ୟନ୍ତ କେହି ଆଉ ଅପେକ୍ଷା କରି ପାରିବେନି । ପୃଥିବୀକୁ ଫଟାଇ ବସୁନ୍ଧରାକୁ ଆଣିବାକୁ ହେବ ....! ! !"

ମଞ୍ଜରୀ ଦେବୀ ବିଦୀର୍ଣ୍ଣ ହେବାକୁ ଯାଉଥିବା ପୃଷ୍ଠାଗୁଡ଼ିକ ପୃଥିବୀର ଚତୁର୍ଦ୍ଦିଗରେ ସତେ ବା ଚକ୍କର ଖାଉଥିଲେ ...! ! !

